# ହସଖୁସିର କାହାଣୀ

ପ୍ରଥମ ଭାଗ

[ ଚତୁର ବୀରବଲ୍ଲଙ୍କ କାହାଣୀ ]

ସଂକଳକ :
ଶ୍ରୀ ନଟବର ସାହୁ

ଶିଶୁସାହିତ୍ୟ ବିକାଶ

ପ୍ରକାଶକ : ଶିଶୁସାହିତ୍ୟ ବିକାଶ
ବିନୋଦବିହାରୀ, କଟକ-୨

ମୁଦ୍ରକ : ଜଗନ୍ନାଥ ପ୍ରିଣ୍ଟର୍ସ, କଟକ-୧

ନୂତନ ସଂସ୍କରଣ : ୧୯୯୬

ମୂଲ୍ୟ : ଟ ୧୨/-

## ବହିଟିର ପରିଚୟ

ଆଗକାଳରେ ରାଜାମାନେ ତାଙ୍କ ଦରବାରରେ ବିଦୂଷକ ରଖୁଥିଲେ । ଏଇ ବିଦୂଷକମାନେ ମଉଜିଆ କଥା କହି ରାଜାମାନଙ୍କ ମନ ଖୁସି କରୁଥିଲେ । ମୋଗଲ୍ ସମ୍ରାଟ୍ ଆକବରଙ୍କ ଦରବାରରେ ବୀରବଲ ନାମରେ ଏପରି ଜଣେ ବିଦୂଷକ ଥିଲେ । ସେ ଜଣେ ପଣ୍ଡିତ ଓ ଅତି ଚତୁର ଲୋକ-ଥିଲେ । ଆକବର ବୀରବଲଙ୍କ ବୁଦ୍ଧି ପରୀକ୍ଷାପାଇଁ ବେଳେବେଳେ ନାନା କଠିନ ପ୍ରଶ୍ନ ପଚାରୁଥିଲେ । ଚତୁର ବୀରବଲ ସେସବୁର ମଉଜିଆ ଉତ୍ତର ଦେଇ ଆକବରଙ୍କୁ ଆଶ୍ଚର୍ଯ୍ୟ କରି ଦେଉଥିଲେ । ଲୋକମୁଖରେ ଚଳିଆସୁଥିବା ବୀରବଲଙ୍କର ସେଇ କାହାଣୀରୁ କେତୋଟି ବାଛିକରି ଅତି ସରଳ ଭାଷାରେ ଏ ବହିରେ ଦିଆହୋଇଛି । ଏଇ ହସଖୁସିର କାହାଣୀଗୁଡ଼ିକ ପାଠକରି ପିଲାମାନେ ଆନନ୍ଦ ପାଇବେ ।

□□□

## ସୂଚୀପତ୍ର


୧ । ଗଧ ବି ତମାଖୁ ଖାଏ ୫
୨ । ସତ ଓ ମିଛ ଭିତରେ ଦୂରତା କେତେ ? ୬
୩ । କେଉଁ ପତ୍ର ସବୁଠୁ ବଡ଼ ? ୭
୪ । ବୋକା ତାଲିକାରେ ଆକବରଙ୍କ ନାମ ୮
୫ । ପଣ୍ଡିତଙ୍କ ଗର୍ବ ଭାଙ୍ଗିଲା ୧୦
୬ । ଓଟ ପିଠିରେ କୁଜ ହେଲା କାହିଁକି ? ୧୩
୭ । ଦିଲ୍ଲୀ ନଗରୀରେ କୁଆସଂଖ୍ୟା କେତେ ? ୧୬
୮ । ବୁଦ୍ଧିର ତୁଳନା ନାହିଁ ୧୭
୯ । ବୀରବଳଙ୍କ ପାଖରେ ସମସ୍ତେ ହାରମାନିଲେ ୨୧
୧୦ । ବୀରବଲ ବେଗମ୍‌ଙ୍କୁ ଜିଣାଇଲେ ୨୩
୧୧ । ବଡ଼ କିଏ ? ୨୪
୧୨ । ପ୍ରକୃତ ଅଳସୁଆ ବାଛିବାର ଉପାୟ ୨୫
୧୩ । ଗରିବକୁ ସାହାଯ୍ୟ ୨୮
୧୪ । ଢେଲା ବଦଳରେ ପଥର ୩୨
୧୫ । ବୀରବଲ ଚୋର ଧରିଲେ ୩୮

# ଗଧ ମଧ ତମାଖୁ ଖାଏ

ଦିନେ ସଞ୍ଜବେଳେ ଆକବର ଓ ବୀରବଲ ଦୁହେଁ ବୁଲି ବାହାରିଲେ। ନଦୀ କୂଳେ କୂଳେ ଯାଉଯାଉ ଆକବର ଦେଖିଲେ ଯେ ଗୋଟିଏ ଗଧ ଧୂଆଁପତ୍ର ବଗିଚାରେ ପଶି ପତ୍ର ଖାଉଛି। ଏ କି ଅସମ୍ଭବ କଥା ? କୌଣସି ପଶୁ ତ ନିଶା ଧରୁଥିବା ଏପରି ଗଛର ପତ୍ର କେବେ ଖାଇବା ସେ ଦେଖିନଥିଲେ ! ଏ



ତ ଏକ ବିଚିତ୍ର କଥା ! ତାଙ୍କୁ ଭାରି ଆଶ୍ଚର୍ଯ୍ୟ ଲାଗିଲା। ତେଣୁ ସେ ବୀରବଲଙ୍କୁ କହିଲେ– ''ବୀରବଲ, ମୁଁ ଦେଖୁଛି, ଗଧ ମଧ ତମାଖୁ ଖାଏ।'' (ତା'ର ମାନେ– ଯେ ତମାଖୁ ନଖାଏ ସେ ଗଧଠୁଁ ବି ହୀନ।)

ବୀରବଲ ସଙ୍ଗେ ସଙ୍ଗେ କହିଲେ– "ହଁ ହଜୁର, ଯିଏ ଗଧ ସେ ତମାଖୁ ଖାଏ– ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ।"

ବୀରବଲ ଯେ ତାଙ୍କୁ ଲକ୍ଷ୍ୟକରି ଏକଥା କହିଲେ ତାହା ଆକବର ବୁଝିପାରିଲେ। କାରଣ ଆକବର ତମାଖୁ ଖାଆନ୍ତି, କିନ୍ତୁ ବୀରବଲ ଖାଆନ୍ତିନାହିଁ। ବୀରବଲଙ୍କ ଉତ୍ତର ଶୁଣି ଆକବର ହସିଉଠିଲେ।

## ସତ ଓ ମିଛ ଭିତରେ ଦୂରତା କେତେ

ଆକବର ବୀରବଲଙ୍କୁ ସବୁବେଳେ ବୁଦ୍ଧିରେ ହରାଇବାକୁ ଚେଷ୍ଟା କରନ୍ତି। କିନ୍ତୁ ସେ ଯେତେ କଠିନ ପ୍ରଶ୍ନ ପଚାରିଲେ ବି ବୀରବଲ ଅତି ଚତୁରତାର ସହ ସବୁ ପ୍ରଶ୍ନର ଉତ୍ତର ଦିଅନ୍ତି। ଥରେ ଆକବର ବୀରବଲଙ୍କୁ ପଚାରିଲେ– "ବୀରବଲ, କହିଲ ଦେଖି ସତ ଓ ମିଛ ଭିତରେ ଦୂରତା କେତେ ?"

ସଙ୍ଗେ ସଙ୍ଗେ ବୀରବଲ କହିଲେ– "ମାତ୍ର ଚାରି ଆଙ୍ଗୁଳ।"

ଆକବର କହିଲେ– "କିପରି ମାପିଲ କୁହ ତ ?"

ବୀରବଲ କହିଲେ– "ଆମେ ଅନ୍ୟଠାରୁ ଯାହା ଶୁଣୁ ତାହା ମିଛ ହୋଇପାରେ। ଏ କାମରେ ଆମକୁ କାନ ସାହାଯ୍ୟ କଲା। କିନ୍ତୁ ଆମେ ନିଜ ଆଖିରେ ଯାହା ଦେଖୁ ତାହା ସତ ବୋଲି ଜାଣୁ– ଏଠି ଆଖି ଆମକୁ ସାହାଯ୍ୟ କଲା। ଆଖି ଓ କାନ ଭିତରେ ଦୂରତା ମାତ୍ର ଚାରି ଆଙ୍ଗୁଳ। ଅତଏବ ସତ ଓ ମିଛ ଭିତରେ ଦୂରତା ମାତ୍ର ଚାରି ଆଙ୍ଗୁଳ।

ପ୍ରଶ୍ନର ଠିକ୍ ଉତ୍ତର ପାଇ ଆକବର ଖୁସିହେଲେ।

# କେଉଁ ପତ୍ର ସବୁଠୁ ବଡ଼ ?

ଆଉ ଦିନେ ବୀରବଲ ଦରବାରକୁ ଆସିନଥାନ୍ତି। ଏହି ସମୟରେ ଆକବର ଅନ୍ୟମାନଙ୍କୁ ପଚାରିଲେ– ''କହିଲ ଦେଖି କେଉଁ ପତ୍ର ସବୁଠୁଁ ବଡ଼।''

ଜଣେ ସଦସ୍ୟ ସଙ୍ଗେ ସଙ୍ଗେ ଉଠିପଡ଼ି କହିଲେ– ''ହଜୁର, କଦଳୀ ପତ୍ର ସବୁଠୁ ବଡ଼।'' ଆଉ ଜଣେ କହିଲେ– ''ନା ନା, ନଡ଼ିଆ ଗଛର ପତ୍ର ସବୁଠୁଁ ବଡ଼।'' ଆଉ ଜଣେ କହିଲା– ''ତାଳ ଗଛର ପତ୍ର ବଡ଼।''

କିନ୍ତୁ ଏସବୁ ଉତ୍ତର ବାଦଶାହାଙ୍କ ମନକୁ ପାଇଲା ନାହିଁ। ଏହି ସମୟରେ ବୀରବଲ ପାନ ଚୋବାଇ ଚୋବାଇ ଦରବାରକୁ ପଶିଆସୁଥାନ୍ତି। ମଝିରେ ମଝିରେ ହାକୁଡ଼ି ମଧ ଠେଲୁଥାନ୍ତି।

ତାଙ୍କୁ ଦେଖି ବାଦଶାହା କହିଲେ– ''ଦେଖ ବୀରବଲ, ମୁଁ ସମସ୍ତଙ୍କୁ ଗୋଟିଏ ପ୍ରଶ୍ନ ପଚାରିଲି– କିନ୍ତୁ ତା'ର ଠିକଣା ଉତ୍ତର ପାଇଲିନାହିଁ। ତୁମେ କହିଲ ଦେଖି– କେଉଁ ଗଛର ପତ୍ର ସବୁଠୁଁ ବଡ଼।''

ବୀରବଲ ପାନ ଚୋବାଇ ଚୋବାଇ କହିଲେ– ''ହଜୁର, ଯେଉଁ ପତ୍ର ସବୁଠୁଁ ବଡ଼ ତାହା ମୋ ପାଟି ଭିତରେ ଅଛି।''

ଏହା ଶୁଣି ସମସ୍ତେ ହସିଉଠିଲେ। ଜଣେ ଉଠିପଡ଼ି କହିଲେ– ''ଆମେ ଜାଣୁ ଯେ ଗାଈଗୋରୁ ଗଛର ପତ୍ର ଖାଆନ୍ତି। ତେବେ ଆମ ବୀରବଲ ଯେ ପତ୍ର ଖାଆନ୍ତି ଆମେ ଏକଥା ଜାଣିନଥିଲୁ।''

ବୀରବଲ କହିଲେ– ''ମୁଁ ଖାଉଛି ବୋଲି ତ ସେ ପତ୍ର ସବୁଠୁଁ ବଡ଼।''

ଆକବର କହିଲେ– ''ତାହା କି ପତ୍ର ?''

ବୀରବଲ କହିଲେ– ''ପାନ।''

ସମସ୍ତେ କହିଲେ– ''ପାନ କିପରି ବଡ଼ ପତ୍ର ହେଲା ?''

ବୀରବଲ କହିଲେ– ‘‘ଯାହାର ଗୁଣ ବଡ଼ ସେ ଦୁନିଆଁରେ ବଡ଼। ଦୁନିଆଁରେ କି ଧନୀ କି ଗରିବ ସମସ୍ତେ ପାନ ଖାଆନ୍ତି। ରାଜା ମହାରାଜା ବି ପାନ ଖାଆନ୍ତି। ତେବେ କହିଲ ଦେଖି ଏଇ ପତ୍ରର ଯେତେ ମାନ ମର୍ଯ୍ୟାଦା ତାହା ଆଉ କେଉଁ ପତ୍ରର ଅଛି ? ସେଥିପାଇଁ ପାନପତ୍ର ସବୁଠୁଁ ବଡ଼।’’

ବୀରବଲଙ୍କର କଥା ସମସ୍ତଙ୍କ ମନକୁ ପାଇଲା।

## ବୋକା ତାଲିକାରେ ଆକବରଙ୍କ ନାମ

ସମ୍ରାଟ୍ ଆକବର ସେତେବେଳେ ଆଗ୍ରାର ନଅରରେ ରହୁଥାନ୍ତି। ବୀରବଲ ବି ସେଠି ଥା’ନ୍ତି। ଦିନେ ଆକବର ବୀରବଲଙ୍କୁ ଡାକି କହିଲେ– ‘‘ବୀରବଲ, ଆମର ଏ ଆଗ୍ରା ସହରରେ କେତେ ବୋକା ରହୁଛନ୍ତି ତା’ର ତାଲିକା ମୋତେ ଦେଇପାରିବ ?’’

ଆକବରଙ୍କ କଥା ଶୁଣି ବୀରବଲ ଆଶ୍ଚର୍ଯ୍ୟ ହୋଇ କହିଲେ– ‘‘ଆପଣ ସେ ତାଲିକା ନେଇ କ’ଣ କରିବେ ?’’

–‘‘ମୋର ଦରକାର ଅଛି। ତୁମେ ଦେଇପାରିବ କି ନାହିଁ ଆଗେ କୁହ ?’’

ବୀରବଲ କହିଲେ– ‘‘ଏ କିବା କଥା ? କାଲି ଆପଣଙ୍କୁ ଦେଇଦେବି।’’

ଆକବର କହିଲେ– ‘‘ଯଦି କାଲି ଭିତରେ ଦେଇପାରିବ ତେବେ ତୁମକୁ ବହୁତ ପୁରସ୍କାର ମିଳିବ।’’

‘‘ଯାହା କହିଲେ ତାହା ମନେରଖିଥିବେ ମଣିମା’’ –କହି ବୀରବଲ ଘରକୁ ଚାଲିଗଲେ।

ତା’ ପରଦିନ ବୀରବଲ ଦରବାରକୁ ଟିକିଏ ଡେରିରେ ଆସିବାରୁ ଆକବର ପଚାରିଲେ– ‘‘ଆପଣଙ୍କର ଆଜି ଏତେ ଡେରି ହେଲା କାହିଁକି ?’’

ବୀରବଲ କହିଲେ– "ଆପଣଙ୍କର ବରାଦୀ ତାଲିକାଟା ତିଆରି କରିବାକୁ ଟିକିଏ ଡେରିହୋଇଗଲା ହଜୁର !"

–"ତା'ହେଲେ ତୁମେ ତାଲିକା ତିଆରି କରି ଆଣିଛ ତ ?"

–"ହଁ ଆଣିଛି। ଏଇ ନିଅନ୍ତୁ।"

ଆକବର ଅତି ଆଗ୍ରହରେ ତାଲିକାଟି ଖୋଲି ପଢୁ ପଢୁ ତାଙ୍କର ମୁହଁ ମଳିନ ପଡ଼ିଗଲା। ସେ ରାଗିଯାଇ କହିଲେ– "ଏ କ'ଣ– ମୋତେ ତୁମେ ବୋକା ଭାବିଲ କିପରି ? ମୋ ନାଆଁ କ'ଣ ତାଲିକାର ସବା ଉପରେ ଅଛି !"

ବୀରବଲ କହିଲେ– "କ୍ଷମା କରିବେ ମଣିମା। ଏଇ କିଛିଦିନ ଆଗରୁ ଆମ ଦରବାରକୁ ଜଣେ ବଣିକ ଆସିଥିଲା। ତା'ର କେତୋଟି ଆରବ ଦେଶର ଘୋଡ଼ା ଥିଲା। ସେ କଥା ଆପଣଙ୍କର ମନେପଡୁଛି ?"

–"ହଁ ମନେପଡୁଛି। କ'ଣ ହେଲା ସେଇଠୁ ?"

ବୀରବଲ କହିଲେ– "ଘୋଡ଼ାଗୁଡ଼ିକୁ ଆପଣ ଖୁବ୍ ଚଢ଼ା ଦରରେ କିଣିଲେ– ଏହା ସତ କି ମିଛ ?"

–"ହଁ ସତ କଥା। ସେଥିରେ କ'ଣ ଗଲା ତୁମର ?"

ବୀରବଲ କହିଲେ– "ସେହିଭଳି ଆହୁରି ଶହେଟି ଘୋଡ଼ା ଆଣିଦେବା ପାଇଁ ଆପଣ ତାକୁ ଦଶହଜାର ମୋହର ପୁଣି ଅଗ୍ରିମ ଦେଲେ– ଏକଥା ସତ ତ ?"

–"ହଁ ଦେଇଛି। ହେଲେ ସେ କଥା ଓ ଏ କଥା ଭିତରେ ତୁଳନା କ'ଣ ?"

ବୀରବଲ କହିଲେ– "ହଜୁର, ଏଇ ତ ବୋକାମି। ସେ ଜଣେ ବିଦେଶୀ ବେପାରୀ। ତାର ଘରଦ୍ୱାର କେଉଁଠି ଜଣାନାହିଁ। ତାକୁ ଆପଣ ଘୋଡ଼ା ଦାମ୍ ଅଗ୍ରିମ ଦେଲେ। ସେ ଯଦି ଘୋଡ଼ା ଆଣି ନଦିଏ, ଆପଣ ତାର କ'ଣ କରିପାରିବେ ? ଏଇଟା ଆପଣଙ୍କର ନିହାତି ବୋକାମି କଥା।"

ଆକବର କହିଲେ – ''ତୁମେ ଏହାକୁ ବୋକାମି କହୁଛ ?''

ବୀରବଲ ସଙ୍ଗେ ସଙ୍ଗେ କହିଲେ – ''ସେଥିପାଇଁ ତ ଆପଣଙ୍କର ନାମ ବୋକା ତାଲିକାର ପ୍ରଥମରେ ରଖିଛି। ମୋର ନିବେଦନ – ଦୋଷ କ୍ଷମା କରିବେ ମଣିମା।''

ଆକବର କହିଲେ – ''ତୁମେ ଦେଖିବ, ସେ ବେପାରୀ ନିଶ୍ଚୟ ଘୋଡ଼ା ନେଇ ଆସିବ।''

ବୀରବଲ କହିଲେ – ''ସେ ଯଦି ଫେରିଆସେ ତେବେ ମୁଁ କହିବି, ସେ ମଧ ଆପଣଙ୍କଠାରୁ ଆହୁରି ବଡ଼ ବୋକା। ସେତେବେଳେ ଆପଣଙ୍କ ନାମଟି ତାଲିକାର ପ୍ରଥମରୁ କାଟି ସେ ବେପାରୀର ନାମଟି ଲେଖିଦେବି।''

ଏ କଥା ଶୁଣି ସମସ୍ତେ ହସିଲେ। ଆକବର ବି ହସିଲେ। ବୋକାଙ୍କ ତାଲିକା କରିବାକୁ କହି ସେଇ ନାମ ତାଲିକାରେ ପ୍ରଥମେ ନିଜ ନାମ ଦେଖି ଆକବର ନିଜେ ଆଜି ବୋକା ହୋଇଛନ୍ତି।

## ପଣ୍ଡିତଙ୍କ ଗର୍ବ ଭାଙ୍ଗିଲା

ଆକବରଙ୍କ ଦରବାରକୁ ଥରେ ବାରାଣସୀରୁ ଜଣେ ବଡ଼ ପଣ୍ଡିତ ଆସିଥିଲେ। ସେ ଯୁକ୍ତିତର୍କରେ ବହୁ ସ୍ଥାନରେ ପଣ୍ଡିତମାନଙ୍କୁ ହରାଇଥିଲେ। ସେଥିପାଇଁ ତାଙ୍କ ମନରେ ଭାରି ଗର୍ବ ଯେ କେହି ତାଙ୍କ ସରି ନୁହନ୍ତି।

ଦିନେ ସେ ଆକବରଙ୍କ ରାଜଦରବାରକୁ ଆସି କହିଲେ – ''ହଜୁର, ଆପଣଙ୍କ ଦରବାରରେ ଅନେକ ପଣ୍ଡିତ ଅଛନ୍ତି ବୋଲି ଶୁଣିବାକୁ ପାଇଲି। ମୁଁ ସେମାନଙ୍କ ସହ ତର୍କ କରିବାକୁ ଆସିଚ଼ି।''

ଆକବର ଏ କଥା ଶୁଣି ଭାରି ଖୁସି ହୋଇ କହିଲେ – ''ଭଲକଥା – ଯୁକ୍ତିତର୍କ ହେଉ। ତେବେ ଆପଣ ପ୍ରଥମେ ଆମ ରାଜସଭାର ଜଣେ ଛୋଟ ପଣ୍ଡିତଙ୍କଠାରୁ ତର୍କ ଆରମ୍ଭ କରନ୍ତୁ।''

ବାରାଣସୀର ପଣ୍ଡିତ କହିଲେ – ''ତା'ର ଅର୍ଥ କ'ଣ ?''

ଆକବର କହିଲେ – ''ମୋ ଦରବାରରେ ଅନେକ ବଡ଼ ବଡ଼ ପଣ୍ଡିତ ଅଛନ୍ତି। ତେବେ ସେମାନଙ୍କ ଭିତରେ ଯାହାର ଟିକେ କମ୍ ବୁଦ୍ଧି ତା' ସଙ୍ଗେ ଆପଣ ଆଗେ ଯୁକ୍ତିତର୍କ କରନ୍ତୁ। ସେ ହାରିଗଲେ ତା'ପରେ ଅନ୍ୟମାନଙ୍କ ସାଙ୍ଗରେ ଜଣ ଜଣ କରି ଯୁକ୍ତି କରିବେ।''

ପଣ୍ଡିତ କହିଲେ – ''ବେଶ୍ ସେଇଆ ହେଉ।''

ତର୍କ ଆରମ୍ଭ ହେଲା। ଆକବର ପ୍ରଥମେ ବୀରବଲଙ୍କୁ ପଠାଇଲେ। ସେ ଜାଣିଥିଲେ ଯେ ଯେତେ ବଡ଼ ପଣ୍ଡିତ ହେଉ ବୀରବଲଙ୍କୁ କେହି ତର୍କରେ ହରାଇପାରିବେ ନାହିଁ।

ପଣ୍ଡିତ ପ୍ରଥମେ ବୀରବଲଙ୍କୁ ପ୍ରଶ୍ନ କଲେ – ''କହିଲେ ଦେଖି କାହାକୁ ଧ୍ୱଂସ କରିହେବନି ?''

ସଙ୍ଗେ ସଙ୍ଗେ ବୀରବଲ ଉତ୍ତର ଦେଲେ – ''ସୁନାମ।''

ଏପରି ଏକ ପ୍ରଶ୍ନର ଏତେ ସହଜ ଓ ସରଳ ଉତ୍ତର ମିଳିବ ବୋଲି ପଣ୍ଡିତ ଆଶା କରିନଥିଲେ। ତେଣୁ ଏ ପ୍ରଶ୍ନଠାରୁ ଆହୁରି କଠିନ ପ୍ରଶ୍ନ ପଚାରିବାକୁ ଠିକ୍ କରି କହିଲେ – ''କହନ୍ତୁ ତ ଦେଖି, କେଉଁ ଜିନିଷ ପଛରେ ଆସେ ଅଥଚ ଆଗେ ଚାଲିଯାଏ।''

ବୀରବଲ କହିଲେ – ''ମଣିଷର ଦାନ୍ତ। ଏହା ଜନ୍ମ ହେବା ପରେ ଆସେ, ଅଥଚ ବୁଢ଼ା ହୋଇ ମରିବା ପୂର୍ବରୁ ସବୁ ପଡ଼ିଯାଇଥାଏ।''

ପଣ୍ଡିତ ପ୍ରଶ୍ନର ସଠିକ୍ ଉତ୍ତର ଶୁଣି ଅବାକ୍ ହୋଇଗଲେ। ସେ ଜାଣିପାରିଲେ ଯେ ଏ ଲୋକକୁ ତର୍କରେ ହରାଇବା ସହଜ ନୁହେଁ। ତେଣୁ ସେ ଆହୁରି କଷ୍ଟକର ଏକ ପ୍ରଶ୍ନ ପଚାରିଲେ – ''କହନ୍ତୁ ତ, ଯୌବନ କାଳରେ ମଣିଷ କ'ଣ କରିବା ଉଚିତ ?''

ବୀରବଲ ପ୍ରଶ୍ନଟା ଶୁଣି ଟିକିଏ ଚିନ୍ତା କରି କହିଲେ – ''ମଣିଷ ବୁଢ଼ା ବୟସରେ କିପରି ସୁଖ ଶାନ୍ତିରେ ରହିପାରିବ ଯୌବନ ସମୟରେ ସେଥିପାଇଁ ଉପାୟ ଚିନ୍ତା କରିବା ଉଚିତ।''

ପଣ୍ଡିତ ଦେଖିଲେ ପ୍ରଶ୍ନର ସଠିକ ଉତ୍ତର ବୀରବଲ ଦେଇଛନ୍ତି। ତା'ପରେ ସେ ଶେଷ ପ୍ରଶ୍ନଟି ପଚାରିଲେ– "କହନ୍ତୁ ତ ଦେଖି, ମଣିଷର ସବୁଠୁଁ ଭଲ ପେଷା କ'ଣ ?"



ବୀରବଲ ସଙ୍ଗେ ସଙ୍ଗେ କହିଲେ– "କୃଷିକାର୍ଯ୍ୟ।"

ପଣ୍ଡିତ କହିଲେ– "ତାହା କିପରି ?"

ବୀରବଲ କହିଲେ– "କୃଷି କାମ କରି ମଣିଷ ଫସଲ ଉପୁଜାଏ, ତାହାକୁ ନିଜେ ଖାଏ ଓ ଜଗତକୁ ଖୁଆଏ। ତେଣୁ ମଣିଷର ସବୁଠୁ ଭଲ କାମ ହେଲା କୃଷି କାମ।"

ପଣ୍ଡିତ ବୀରବଲଙ୍କୁ ଆନନ୍ଦରେ କୁଣ୍ଢାଇ ପକାଇ କହିଲେ– "ଆପଣ ହିଁ ମୋର ଗର୍ବ ଭାଙ୍ଗିଲେ। ମୁଁ ଆପଣଙ୍କ ପାଖରେ ହାର ମାନୁଚି।"

# ଓଟ ପିଠିରେ କୁଜ ହେଲା କାହିଁକି ?

ବାଦଶାହା ଆକବର ବୀରବଲଙ୍କ କୌତୁକିଆ ଓ ମଜା କଥା ଶୁଣି ଭାରି ଖୁସିହେଉଥିଲେ । ତାଙ୍କର ବିଦୂଷକପଣକୁ ବହୁତ ପ୍ରଶଂସା କରୁଥିଲେ । ତାଙ୍କ କଥାରେ ମୁଗ୍ଧ ହୋଇ ସେ ଥରେ ତାଙ୍କୁ ଗୋଟିଏ ଜାଗିରି ଦାନ କରିବାକୁ କହିଲେ ।

ବାଦଶାହାଙ୍କ କଥାରେ ବୀରବଲ ଭାରି ଖୁସିହୋଇଗଲେ । କେବେ ଜାଗିରି ମିଳିବ ବୀରବଲ ଚାତକ ପରି ଚାହିଁ ରହିଥାନ୍ତି । ଦିନ ମାସ ବର୍ଷ ବିତିଗଲା – କିନ୍ତୁ ବୀରବଲ ଜାଗିରିଟି ପାଇଲେ ନାହିଁ । କାଳେ ବାଦଶାହା ସେ କଥା ଭୁଲିଯାଇଥିବେ ସେଥିପାଇଁ ବୀରବଲ ଦିନେ ଆକବରଙ୍କୁ ମନେପକାଇଦେଲେ ।

ଏଥିରେ ଆକବର ବିରକ୍ତ ହୋଇ କହିଲେ – ''ତୁମେ କାହିଁକି ଏତେ ଅଧୀର ହେଉଛ ବୀରବଲ ? କଥା ଦେଇଛି ଯେତେବେଳେ ଜାଗିରି ଅବଶ୍ୟ ମିଳିବ ।'' କିନ୍ତୁ କଥା କଥାରେ ରହିଗଲା । ବୀରବଲ ଜାଗିର ପାଇଲେ ନାହିଁ । ତେଣୁ କିପରି କୌଶଳ କରି ଜାଗିରଟି ପାଇବେ ବୀରବଲ ସେଇ ସୁଯୋଗ ଅପେକ୍ଷାରେ ଥାଆନ୍ତି ।

ଆକବର ଥରେ ଦେଶଭ୍ରମଣରେ ଯିବାକୁ ଠିକ୍ କଲେ । ସାଙ୍ଗରେ ବୀରବଲ ଯିବେ । ଆଗ କାଳରେ ତ ଏକାଳ ଭଳି ଗାଡ଼ିମଟର ଆଦି ନଥିଲା; ତେଣୁ ସେମାନଙ୍କୁ ହାତୀ ବା ଓଟ ପିଠିରେ ବସି ଯିବାକୁ ହେଉଥିଲା । ଆକବର ଓ ବୀରବଲଙ୍କୁ ଓଟ ପିଠିରେ ଯିବାକୁ ହେଲା ।

ଆକବର ଓଟକୁ ଦେଖାଇ ବୀରବଲଙ୍କୁ କହିଲେ – ''ଓଟ ପିଠିରେ କୁଜଟାଏ ଅଛି ବୋଲି ତା' ଉପରେ ସୁବିଧାରେ ବସି ହୁଏନାହିଁ । କୁଜ ନଥିଲେ ବସିବାକୁ କେତେ ସୁବିଧା ହୁଅନ୍ତା କହିଲ !''

ବୀରବଲ କହିଲେ – ''ସତକଥା ମଣିମା ।''

ଆକବର ପୁଣି କହିଲେ – ବୀରବଲ, ଭଗବାନଙ୍କର କି ଅବିଚାର ଦେଖ ତ! ଓଟ ବହୁତ କଷ୍ଟ ସହିପାରେ । ମରୁଭୂମିରେ ଯାତ୍ରୀର ସେ ସହାୟ । ତେଣୁ ତାକୁ ମରୁଭୂମିର ଜାହାଜ କହନ୍ତି ।



ଓଟ ବିନା ମରୁଭୂମିରେ ଯିବା ଆସିବା କରିବା ଅସମ୍ଭବ । ଅଥଚ୍ ଭଗବାନ ଏଡ଼େ ନିର୍ଦ୍ଦୟ ଯେ, ଏପରି ଜନ୍ତୁର ପିଠିରେ ଏତେ ବଡ଼ ଏକ କୁଜ ଦେଇଚ୍ଛନ୍ତି । ଇସ୍, ଦେଖିବାକୁ କି ଅସୁନ୍ଦର! ତା'ପରେ ତାକୁ ଯେଉଁ ଶାସ୍ତି ମିଳୁଛି...''

ବୀରବଲ କହିଲେ– "ହଜୁର, ଓଟକୁ କ'ଣ ମିଛରେ ଶାସ୍ତି ମିଳୁଛି? ପୂର୍ବ ଜନ୍ମରେ କରିଥିବା ପାପର ବୋଝ ସେ ପିଠିରେ ବୋହି ଚାଲିଛି।"

ଆକବର ଆଶ୍ଚର୍ଯ୍ୟ ହୋଇ କହିଲେ– "ଆର ଜନ୍ମରେ ସେ ତ ଓଟ ଥିଲା– ସେ ପୁଣି କି ପାପ କଲା ଯେ ଏ ଜନ୍ମରେ ତା'ର ଫଳ ଭୋଗୁଛି?"

ବୀରବଲ କହିଲେ– "ଆପଣ କେମିତି ଜାଣିଲେ ଯେ ଆର ଜନ୍ମରେ ସେ ଓଟ ଥିଲା? ଏମିତି ବି ହୋଇପାରେ– ଆର ଜନ୍ମରେ ସେ ନବାବ୍ କି ବାଦଶାହା ହୋଇଥାଇପାରେ।"

ଆକବର ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ ବୀରବଲଙ୍କୁ ଚାହିଁରହିଲେ। ବୀରବଲ କହିଲେ– "ହଜୁର, ପାପର ବୋଝ ବଡ଼ ଭୟାନକ। ସେଥିପାଇଁ ଶାସ୍ତି ଭୋଗିବାକୁ ପଡ଼େ। ଓଟ ଯେ କେବଳ ତାର କୁଜ ବୋହି ଚାଲିଛି ତା' ନୁହେଁ, ଯେତେଦିନ ପର୍ଯ୍ୟନ୍ତ ବଞ୍ଚିଥାଏ, ଭଗବାନଙ୍କୁ ଡାକି ଡାକି ଉପରକୁ ଚାହିଁ ରହିଥାଏ। ତାକୁ କ୍ଷମା କରିଦେବାକୁ ସେ ଭଗବାନଙ୍କୁ ଡାକୁଥାଏ। ସେଥିପାଇଁ ସେ ଉପରକୁ ମୁହଁ ଟେକି ରହିଥାଏ। ଯେଉଁଦିନ ତା'ର ମୃତ୍ୟୁ ହୁଏ, ସେଦିନ ସେ ମୁକ୍ତିପାଏ।"

ଆକବର ଆଶ୍ଚର୍ଯ୍ୟ ହୋଇ କହିଲେ– "ଓଟ ତା' ପୂର୍ବ ଜନ୍ମରେ କି ପାପ କରିଛି ଯେ ସେଥିପାଇଁ ଏ କଷ୍ଟ ଭୋଗୁଛି?"

ବୀରବଲ କହିଲେ– "ମୁଁ ଜାଣିବାରେ ଦୁଇଟି କାରଣ ଲାଗି ସେ ଏ ଜନ୍ମରେ ଏତେ କଷ୍ଟ ଭୋଗୁଛି।"

ଆକବର କହିଲେ– "କାରଣ ଦୁଇଟି କ'ଣ?"

ବୀରବଲ କହିଲେ– "ଆଗ ଜନ୍ମରେ ଏ ଏକ ଅତି ବଡ଼ ଲୋକ ଥିଲା। ସେତେବେଳେ କୌଣସି ଲୋକକୁ କିଛି ଦେବାକୁ କଥା ଦେଇଥିଲା, କିନ୍ତୁ ଦେଇନାହିଁ। ଏହା ହେଲା ପ୍ରଥମ କାରଣ।"

ବୀରବଲ ଏକଥା କହି ଆକବରଙ୍କୁ ଲକ୍ଷ୍ୟ କଲେ। ଆକବରଙ୍କ ମୁହଁ ମଳିନ ପଡ଼ିଯିବାର ସେ ଲକ୍ଷ୍ୟ କଲେ। ତା'ପରେ କହିଲେ–

''ଓଟ ହୁଏତ କାହାକୁ ଠକିଥିବ ।''

ଆକବର ସଙ୍ଗେ ସଙ୍ଗେ ବଡ଼ପାଟିକରି କହିଲେ – ''ବନ୍ଦକର ବୀରବଲ – ଆଉ କହିବା ଦରକାର ନାହିଁ । ଚାଲ ଫେରିଯିବା । ଦେଶ ଭ୍ରମଣ ଆଉ ଦରକାର ନାହିଁ ।''

ଆକବର ବୀରବଲଙ୍କ କଥାର ଗୁମର ବୁଝିପାରିଲେ । ରାଜଧାନୀକୁ ଫେରିଆସି ବୀରବଲଙ୍କୁ ସଙ୍ଗେ ସଙ୍ଗେ ଏକ ଜାଗିର ଦାନପତ୍ର କରିଦେଲେ । ବୀରବଲ ତାହା ପାଇ ବହୁତ ଖୁସିହେଲେ ।

## ଦିଲ୍ଲୀ ନଗରୀରେ କୁଆ ସଂଖ୍ୟା କେତେ ?

ଥରେ ବାଦଶାହା ବୀରବଲଙ୍କ ସହ ଦରବାରରେ ଆଲୋଚ଼ନା କରୁଥାନ୍ତି । ଏହି ସମୟରେ ଗୋଟିଏ କୁଆ ତାଙ୍କ ସାମନାରେ ଉଡ଼ି ଚାଲିଗଲା । ବାଦଶାହାଙ୍କର ଖିଆଲ ତ – ସଙ୍ଗେ ସଙ୍ଗେ ସେ ବୀରବଲଙ୍କୁ କହିଲେ – ''ଆଚ୍ଛା ବୀରବଲ, ଆମ ଦିଲ୍ଲୀ ନଗରୀରେ କେତେ କୁଆ ଅଛନ୍ତି କହିପାରିବ ?''

ବୀରବଲ ଟିକେ ଚିନ୍ତା କରିବାର ଅଭିନୟ କଲେ । ତା'ପରେ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ କହିଲେ – ''କ'ଣ ମୋଟାମୋଟି ହିସାବ କରି କହିବି ନା ବର୍ତ୍ତମାନ ସମୟରେ ଯେତେ କାଉ ଅଛନ୍ତି ତା'ର ହିସାବ ଦେବି ?''

ସମ୍ରାଟ୍ କହିଲେ – ''ତୁମର ଯେମିତି ଖୁସି ହିସାବ ଦିଅ ।''

ବୀରବଲ କିଛି ସମୟ ଆଖି ବୁଜି ରହିଲେ – ସତେ ଯେପରି ସେ ଗଭୀର ଭାବରେ କ'ଣ ଚିନ୍ତା କରୁଛନ୍ତି । ତା'ପରେ ଧୀରେ ଧୀରେ ଆଖି ଖୋଲି କହିଲେ – ''ହଜୁର, ବର୍ତ୍ତମାନ ଏହି ସମୟରେ ଦିଲ୍ଲୀନଗରୀରେ ଏକ ଊଣା ଏକ ଲକ୍ଷ୍ୟ କାଉ ଅଛନ୍ତି ।''

ଆକବର କହିଲେ – ''ଠିକ୍ କରି କହିଛ ତ ?''

ବୀରବଲ କହିଲେ – ''ମୋ କଥାରେ ଯଦି ସନ୍ଦେହ ହେଉଛି,

ତେବେ ଆପଣ ନିଜେ ଗଣିକରି ଦେଖିପାରନ୍ତି।''

ଆକବର କହିଲେ – ''ଗଣିଲେ ଯଦି କମ୍ ଦେଖେ ?''

ବୀରବଲ କହିଲେ – ''ଯଦି କମ୍ ଦେଖନ୍ତି ତେବେ ଜାଣିବେ ଯେ କେତେଟା ତାଙ୍କର ବନ୍ଧୁବାନ୍ଧବଙ୍କ ଘରକୁ ଚାଲିଯାଇଛନ୍ତି। ଆଉ ଯଦି ବେଶି ହେବ, ତେବେ ଜାଣିବେ ବାହାରର କାଉମାନେ ସେମାନଙ୍କ ବନ୍ଧୁଘରକୁ ଆସିଛନ୍ତି।''

ବୀରବଲଙ୍କ କଥା ଶୁଣି ଆକବର ହସିଉଠିଲେ।

## ବୁଦ୍ଧିର ତୁଳନା ନାହିଁ

ଥରେ ଜଣେ ଫକୀର ଆକବରଙ୍କୁ ଗୋଟିଏ ଶୁଆ ଉପହାର ଦେଲେ। ଆକବର ଶୁଆଟିକୁ ଖୁବ୍ ଯତ୍ନରେ ପାଳିଲେ। ସମ୍ରାଟ୍ ତା' ପାଇଁ ସୁନାର ଗୋଟିଏ ଦଣ୍ଡ ତିଆରି କରାଇଲେ। ପକ୍ଷୀଟିକୁ ସୁନା ଶିକୁଳିରେ ସେହି ସୁନା ଦଣ୍ଡରେ ବାନ୍ଧିରଖି ଖୁଆଇଲେ ପିଆଇଲେ। କିନ୍ତୁ ଦେଖାଗଲା, କିଛି ଦିନ ପରେ ପକ୍ଷୀଟିର ଆଦର ଯତ୍ନ କମିଯାଇଛି। ତେଣୁ ସେ ପକ୍ଷୀଟିକୁ ବଗିଚାର ମାଳୀକୁ ଦେଇ ଯତ୍ନରେ ପାଳିବାକୁ ଆଦେଶ ଦେଲେ।

ସମ୍ରାଟ୍ ଆଦେଶ ଦେଇ କହିଲେ – ''ପକ୍ଷୀଟିକୁ ପାଳିବାରେ ଯେପରି କିଛି ହେଳା ନରହେ। ପକ୍ଷୀର ଦେହ ଖରାପ ହେଲେ ସଙ୍ଗେ ସଙ୍ଗେ ଖବର ଦେବ। ଆଉ ଯଦି ପକ୍ଷୀଟି ମରିଯାଏ ତେବେ ରକ୍ଷାନାହିଁ। ଯିଏ ଆସି ପକ୍ଷୀଟିର ମୃତ୍ୟୁ ଖବର ଦେବ, ତାକୁ ମୃତ୍ୟୁ ଦଣ୍ଡ ଦିଆଯିବ।''

ସମ୍ରାଟ୍‌ଙ୍କ ଆଦେଶ ମାନି ମାଳୀ ଖୁବ୍ ଆଦର ଯତ୍ନ କରି ପକ୍ଷୀଟିକୁ ପାଳିଥାଏ। କିନ୍ତୁ କ'ଣ ହେବ ଏତେ କରି ? ଦିନେ ସକାଳୁ ଉଠି ସେ ଦେଖିଲା – ପକ୍ଷୀଟି ମରିଯାଇଛି। ଏହା ଦେଖି ମାଳୀ ବି ଭୟରେ ମଲାପରି ହୋଇଗଲା। ଏବେ କିପରି ସେ ପକ୍ଷୀର ମରିବା ଖବର ସମ୍ରାଟ୍‌ଙ୍କୁ ଦେବ ? ଖବର ଦେଲେ ଯେ

ମୃତ୍ୟୁଦଣ୍ଡ ମିଳିବ।

ତେବେ ଖବର ନଦେଲେ ବି ରକ୍ଷାନାହିଁ। ତେଣୁ ମାଳୀ ଭୟରେ ଥରି ଥରି ଦରବାରକୁ ଚାଲିଲା। ବାଟରେ ବୀରବଲଙ୍କୁ ଦେଖି ଦୌଡ଼ିଯାଇ ତାଙ୍କ ଗୋଡ଼ଧରି ପଡ଼ିଗଲା। କାନ୍ଦି କାନ୍ଦି କହିଲା – "ମୋତେ ବଞ୍ଚାନ୍ତୁ, ନହେଲେ ମୁଁ ମଲି।"

ବୀରବଲ ସାହସଦେଇ କହିଲେ – "ତୋର କ'ଣ ହେଇଚି କହ ? ଏମିତି କାନ୍ଦୁଚୁ କାହିଁକି ? ତୁ କିଏ ?"

ମାଳି କହିଲା – "ମୁଁ ହେଉଚି ବାଦଶାହାଙ୍କ ପୋଷା ଶୁଆଟିର ଯତ୍ନ ନେଉଥିବା ମାଳୀ।"

ବୀରବଲ କହିଲେ – " ହଁ ଜାଣିଲି। ତେବେ କ'ଣ ହେଲା ?"

ମାଳୀ କହିଲା – "କ'ଣ କହିବି ହଜୁର, ପକ୍ଷୀଟିକୁ କେତେ ଯତ୍ନରେ ପାଳିଥିଲି। କେବେ କିଛି ହେଳା କରୁନଥିଲି। କିନ୍ତୁ ଆଜି ସକାଳୁ ଉଠି ଦେଖିଲି – ପକ୍ଷୀଟି ତା' ସୁନା ଖୁଦ ଉପରେ ମରି ଝୁଲୁଛି। ଆପଣ ତ ସମ୍ରାଟ୍‌ଙ୍କ ହୁକୁମ ଶୁଣିଚନ୍ତି। ଯିଏ ପ୍ରଥମେ ବାଦଶାହାଙ୍କୁ ଶୁଆର ମରଣ ଖବର ଦେବ ସେ ମୃତ୍ୟୁଦଣ୍ଡ ପାଇବ। ଏବେ ମୁଁ କିପରି ଏ ଖବର ବାଦଶାହାଙ୍କୁ ଦେବି ?"

ବୀରବଲ କହିଲେ –, "ହଉ ଚିନ୍ତା କରନାହିଁ। ମୁଁ ତୋତେ ରକ୍ଷାକରିବି। ସମ୍ରାଟ୍‌ଙ୍କ ପାଖକୁ ଯିବାପୂର୍ବରୁ ମୁଁ ଥରେ ସେ ପକ୍ଷୀଟିକୁ ଦେଖିଆସିବି।"

ମାଳୀ ବୀରବଲଙ୍କୁ ନେଇ ସେ ମଲା ପକ୍ଷୀଟିକୁ ଦେଖାଇଲା। କାନ୍ଦି କାନ୍ଦି କହିଲା – ହଜୁର, ମୋତେ ରକ୍ଷା କରନ୍ତୁ।

ବୀରବଲ କହିଲେ – "ତୁ ଚୁପ୍ ରହ। ମୁଁ ତୋତେ ରକ୍ଷା କରିବି।" ଏହା କହି ସେ ଉପାୟ ଚିନ୍ତା କରି କରି ଦରବାରରେ ପହଞ୍ଚିଲେ।

ବାଦଶାହା ବୀରବଲଙ୍କୁ ଦେଖି କହିଲେ – "ବୀରବଲ, ଆଜି କାହିଁକି ତୁମେ ଚିନ୍ତିତ ଥିଲାପରି ଜଣାପଡୁଛ ! କଥା କ'ଣ ? ତୁମର ସବୁ ଭଲ ତ ?"

ବୀରବଲ କହିଲେ– ‘‘ସବୁ ଭଲ ଯେ, ହେଲେ ଆପଣଙ୍କ ପୋଷା ଶୁଆଟି...’’ ଏହା କହି ସେ ଚୁପ୍ ହୋଇଗଲେ। ବୀରବଲ ଚୁପ୍ ହେବା ଦେଖି ବାଦଶାହା କହିଲେ– ‘‘କୁହ ବୀରବଲ– କଥା କ’ଣ? ସେ ପୋଷା ଶୁଆଟି ମରିଗଲା ନା କ’ଣ?’’



ବୀରବଲ କହିଲେ– ‘‘ସେ ମରିବ କେମିତି? ତା’ର ଏତେ ସେବାଯତ୍ନ ହେଉଛି। ସେ ମରିନି– ସେ ତପସ୍ୟା କରୁଛି। ଆଖିବୁଜି ଧ୍ୟାନରେ ବସିଛି।’’

ସମ୍ରାଟ୍ କହିଲେ– ‘‘ଆଖି କାହିଁକି ବୁଜିଛି? ସେ କ’ଣ ଶୋଇଛି ନା କ’ଣ?’’

ବୀରବଲ କହିଲେ– ‘‘ମୁଁ କ’ଣ ପକ୍ଷୀଙ୍କ ଉପରେ ଗବେଷଣା

କରିଛି ଯେ ସେ କ'ଣ କରୁଛି କହିପାରିବି ?''

ସମ୍ରାଟ୍ ଟିକେ ରାଗିଯାଇ କହିଲେ– ''ଏମିତି ଅଖାଡୁଆ କଥା କହନାହିଁ। ଖୋଲିକରି କହ– ପକ୍ଷୀଟି ମରିଯାଇଛି ନା କ'ଣ ?''

–''ମୁଁ କ'ଣ ସେ କଥା କହିପାରିବି ? ତେବେ ସେ ତା'ର ସୁନା ଦଣ୍ଡରେ ଓଲଟା ଝୁଲି ଯୋଗ ସାଧନା କରୁଛି।''

ଆକବରଙ୍କର ବୀରବଲଙ୍କ କଥାରେ ସନ୍ଦେହହେଲା। ସେ କହିଲେ– ''ଚାଲ, ପକ୍ଷୀଟିକୁ ଥରେ ଦେଖିଆସିବା।'' ଏହା କହି ସେ ଯାଇ ଦେଖିଲେ ଯେ ପକ୍ଷୀଟି ମରିଯାଇଛି। ବାଦଶାହା ବୀରବଲଙ୍କୁ କହିଲେ– ''କିହୋ ବୀରବଲ, ତୁମେ ଏତେ ବୁଦ୍ଧିଆ ହୋଇ ବି ଏ ସାଧାରଣ କଥାଟା ଜାଣିପାରୁନ ? ପକ୍ଷୀଟା ପରା ମରିଗଲାଣି ?''

ବୀରବଲ କହିଲେ– ''ସବୁ ବୁଝୁଛି ମଣିମା– ତେବେ ଆପଣଙ୍କ ହୁକୁମ କଥା ମନେପକାନ୍ତୁ। ପକ୍ଷୀଟି ମରିଗଲା ବୋଲି କିଏ ଆସି ଆପଣଙ୍କୁ ଜଣାଇବ କହିଲେ ? ଯିଏ ଜଣାଇବ ସେ ମୃତ୍ୟୁ ଦଣ୍ଡ ପାଇବ। ତେଣୁ ଏମିତି ଭାବେ ଆପଣଙ୍କୁ ସବୁ କଥା ଜଣାଇଲି।''

ଏଥରକ ଆକବରଙ୍କର ରାଗ ମାଳୀ ଉପରେ ପଡ଼ିଲା। ସେ କହିଲେ– ''ଯିଏ ପକ୍ଷୀଟିର ଯତ୍ନ ନେଉଥିଲା ସେ କ'ଣ କରୁଥିଲା ? ପକ୍ଷୀଟି ମଲା କିପରି ?''

ବୀରବଲ କହିଲେ– ''ସେ ବିଚରାର ଦୋଷ କ'ଣ ? ସେ ତ ପ୍ରାଣପଣେ ଚେଷ୍ଟା କରି ପକ୍ଷୀଟିର ଯତ୍ନ ନେଉଥିଲା। ସେ ଯତ୍ନ କରିବାରେ କେବେ ହେଳା କରିନି। ମରଣ ଉପରେ ମଣିଷର ହାତ ନାହିଁ ସମ୍ରାଟ୍– ତେଣୁ ତାକୁ କ୍ଷମା କରନ୍ତୁ।''

ଆକବର ବୀରବଲଙ୍କ ଚତୁରତାକୁ ପ୍ରଶଂସା କଲେ। ତାଙ୍କ ଯୋଗୁ ମାଳୀଟି ନିଶ୍ଚିତ ମୃତ୍ୟୁ ମୁହଁରୁ ରକ୍ଷାପାଇଲା।

# ବୀରବଲଙ୍କ ପାଖରେ ସମସ୍ତେ ହାରିଲେ

ବୀରବଲଙ୍କ ସୁନାମ ଦିନକୁ ଦିନ ବଢ଼ିବାରେ ଲାଗିଲା। ବୀରବଲ ସମ୍ରାଟ୍‌ଙ୍କର ଅତି ନିକର ହୋଇଗଲେ। ଏହା ଦେଖି ମନ୍ତ୍ରୀ ଓ ସେନାପତିମାନଙ୍କ ମନରେ ଈର୍ଷା ଜାତହେଲା।

ଥରେ କେତେକ କର୍ମଚାରୀ ମିଳି ବାଦଶାହାଙ୍କୁ କହିଲେ– "ହଜୁର, ଯେକୌଣସି କାମ କରିବାକୁ ହେଲେ ଆଜିକାଲି ବୀରବଲଙ୍କ ପରାମର୍ଶ ଲୋଡୁଛନ୍ତି। ଆମେ କ'ଣ କୌଣସି କାମ କରିବାକୁ ଅସମର୍ଥ? ଆପଣ ବୀରବଲଙ୍କୁ ଖୁବ୍ ଭଲ ପାଉଛନ୍ତି। ସବୁ ଭଲ କାମଗୁଡ଼ିକ ତାଙ୍କୁ ହିଁ କରିବାକୁ ଦେଉଛନ୍ତି। ଆମେ କ'ଣ ଆପଣଙ୍କର କିଛି ସେବା କରି ପାରିବୁ ନାହିଁ?"

ଆକବର ଏ ପ୍ରକାର କଥା ଶୁଣି ମନେ ମନେ ହସିଲେ। ସେ ହସି କହିଲେ– "ଆପଣମାନେ ଯେଉଁ କାମ କରିପାରିବେନି, ସେମିତି କାମ ମୁଁ ଆପଣମାନଙ୍କୁ ଦେଉନି। ଯଦି ଆପଣମାନଙ୍କୁ ସେ ସବୁ କାମ ଦେବି ଆପଣମାନେ କରି ପାରିବେ ତ?"

କର୍ମଚାରୀମାନେ କହିଲେ– "ହଜୁର, ଥରେ ପରୀକ୍ଷା କରି ଦେଖନ୍ତୁ– ଆମେମାନେ ପାରୁଛୁ କି ନାହିଁ!"

ଆକବର କହିଲେ– "ହେଉ, କାଲି ପରୀକ୍ଷା କରିବା।"

ତା' ପରଦିନ ଆକବର ଦରବାକୁ ଆସି ଦୁଇହାତ ଲମ୍ବର ଖଣ୍ଡେ କନା ଆଣିବାକୁ ଜଣେ ସେବକକୁ ଆଦେଶ ଦେଲେ। କନା ଖଣ୍ଡକ ଦୁଇ ହାତରୁ ବେଶି ବା କମ୍ ଲମ୍ବ ହେବନାହିଁ। ଆଦେଶ ଅନୁସାରେ ଚାକର ଯାଇ କନାଖଣ୍ଡେ ଆଣିଲା।

ଆକବର କନାଖଣ୍ଡିକ ମନ୍ତ୍ରୀମାନଙ୍କୁ ଦେଖେଇ କହିଲେ– "ଏଇ କନାରେ ଯିଏ ମୋର ଆପାଦ ମସ୍ତକ ଘୋଡ଼ାଇ ଦେବ, ସେ ବୁଦ୍ଧିମାନ୍ ବୋଲି ମୁଁ ଭାବିବି। ସେ ଲୋକ ବୀରବଲଠାରୁ ବେଶି ବୁଦ୍ଧିମାନ୍ ବୋଲି କହିବି।" ଏହା କହି ସେ ଗୋଟିଏ ଖଟ ଉପରେ ଶୋଇପଡ଼ିଲେ। ମୁଣ୍ଡଠାରୁ ପାଦ ପର୍ଯ୍ୟନ୍ତ ସେହି

ଦୁଇ ହାତ ଲମ୍ବା କପଡ଼ାରେ ତାଙ୍କୁ ଘୋଡ଼ାଇଦେବାକୁ ଜଣ ଜଣ କରି ସମସ୍ତଙ୍କୁ କହିଲେ ।

ଏ କଥା ଶୁଣି ମନ୍ତ୍ରୀ, ସେନାପତି, ଚାକରବାକର ସମସ୍ତେ ଅବାକ୍ । ମାତ୍ର ଦୁଇ ହାତ ଲମ୍ବର କପଡ଼ାରେ ସମ୍ରାଟ୍‌ଙ୍କର ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ କେମିତି ଘୋଡ଼େଇ ହେବ ? ଏ କଥା ତ କେବେ ସମ୍ଭବ ହେବନି ।

ମନ୍ତ୍ରୀ ସେନାପତି ଆଦି ସମସ୍ତେ ହାତ ଯୋଡ଼ି କହିଲେ – ''ମଣିମା, ଏ କାମ ଆମେ କରିପାରିବୁ ନାହିଁ ।''

ସମ୍ରାଟ୍ କହିଲେ – ''ଆଚ୍ଛା, ଏଥର ବୀରବଲଙ୍କୁ ଡକାଯାଉ । ସେ କରିପାରିବେ କି ନାହିଁ ଦେଖିବା ।''

ସଙ୍ଗେ ସଙ୍ଗେ ବୀରବଲଙ୍କୁ ଡକାଗଲା । ଡାକରା ପାଇ ବୀରବଲ ଆସିଲେ । ସେହି ଦୁଇ ହାତ ଲମ୍ବର କପଡ଼ାରେ ତାଙ୍କର ସମସ୍ତ ଶରୀର ଘୋଡ଼ାଇଦେବାକୁ ସମ୍ରାଟ୍ ବୀରବଲଙ୍କୁ କହିଲେ ।

ମନ୍ତ୍ରୀମାନେ ମନେ ମନେ ହସି ଭାବିଲେ – ଏଥରକ ବୀରବଲ ଜବତ୍ ହେବେ ।

ବୀରବଲ ସଙ୍ଗେ ସଙ୍ଗେ କହିଲେ – ''ମଣିମା, ଏ କାମ ତ ଅତି ସହଜ । ଦିଅନ୍ତୁ, ମୁଁ ସଙ୍ଗେ ସଙ୍ଗେ କରିଦେଉଛି ।''

ମନ୍ତ୍ରୀ ଓ କର୍ମଚାରୀମାନେ ଭାବିଲେ – କି ଆଶ୍ଚର୍ଯ୍ୟ କଥା ! ଲୋକଟା ଟିକିଏ ବି ଚିନ୍ତା ନକରି ସଙ୍ଗେ ସଙ୍ଗେ କରିଦେବ ବୋଲି କହୁଛି । ଆଚ୍ଛା ଦେଖିବା !

ବୀରବଲ ସମ୍ରାଟ୍‌ଙ୍କୁ କହିଲେ – ''ହଜୁର, ଆପଣ ଗୋଡ଼କୁ ଆଣ୍ଠୁ ପର୍ଯ୍ୟନ୍ତ ଆଣନ୍ତୁ ଓ ମୁଣ୍ଡକୁ ବେକ ଆଡ଼କୁ ନୁଆଇଁ ଆଣନ୍ତୁ ।'' ସମ୍ରାଟ୍ ଠିକ୍ ସେମିତି କଲେ । ବୀରବଲ ସେହି ଦୁଇହାତ ଲମ୍ବର କପଡ଼ାରେ ସମ୍ରାଟ୍‌ଙ୍କର ସାରା ଶରୀର ଢାଙ୍କିଦେଲେ – କୌଣସି ଅସୁବିଧା ହେଲାନାହିଁ ।

ଏକଥା ଦେଖି ସମସ୍ତ ରାଜକର୍ମଚାରୀ ଅବାକ୍ ହୋଇଗଲେ । ସମସ୍ତେ ବୀରବଲଙ୍କ ବୁଦ୍ଧିକୁ ପ୍ରଶଂସା କଲେ ।

# ବୀରବଲ୍ ବେଗମ୍‌ଙ୍କୁ ଜିଣାଇଲେ

ଥରେ ଜଣେ ପ୍ରଜା ଗୋଟିଏ ଝୁଡ଼ି ଅତି ମିଠାଆମ୍ବ ବାଦଶାହାଙ୍କୁ ଉପହାର ଦେଲା । କହିଲା – "ମଣିମା, ଏଭଳି ମିଠା ଆମ୍ବ ବିରଳ । ଗୋଟିଏ ଆମ୍ବ ଖାଇଲେ ସବୁତକ ଆମ୍ବ ଖାଇବାକୁ ମନହେବ ।

ବାଦଶାହା ଆମ୍ବ ଝୁଡ଼ିଟି ରଖି ସେଥିରୁ ଗୋଟିଏ ଖାଇଲେ । ସତରେ ସେ ଆମ୍ବ ଏତେ ମିଠା ଯେ ତା'ର ତୁଳନା ନାହିଁ । ତେଣୁ ସେ ତାଙ୍କର ବେଗମ୍‌ଙ୍କୁ ଡାକିଲେ ଓ ଦୁହେଁ ବସି ଆମ୍ବ ଖାଇଲେ ।

ଆମ୍ବ ଖାଉ ଖାଉ ବାଦଶାହା ବେଗମ୍‌ଙ୍କ ସହ ଏକ ମଜା ଖେଳିଲେ । ସେ ଯେତେ ଆମ୍ବ ଖାଉଥାନ୍ତି ତା'ର ଚୋପା ଓ ଟାକୁଆ ରାଣୀ ବସିଥିବା ପଟରେ ପକାଇଦେଉଥାନ୍ତି । ରାଣୀଙ୍କର ସେଥିପ୍ରତି ନଜର ନଥାଏ । ଦୁହେଁ ବସି ଖାଉଖାଉ ସବୁତକ ଆମ୍ବ ଖାଇଦେଲେ । ହେଲେ ସବୁ ଟାକୁଆ ଓ ଚୋପା ରାଣୀଙ୍କ ପଟରେ ହିଁ ଜମା ହୋଇ ରହିଲା ।

ଏହି ସମୟରେ ବୀରବଲ ଆସି ସେଠାରେ ପହଞ୍ଚିଲେ । ବାଦଶାହା ଥଟ୍ଟାକରି କହିଲେ – "ଦେଖୁଛ ବୀରବଲ, ଆମ ବେଗମ୍ କେଡ଼େ ଖାଇବା ଲୋଭୀ ? ମୋତେ ନଦେଇ ଝୁଡ଼ିକଯାକ ଆମ୍ବ ସେ ନିଜେ କେମିତି ଖାଇଦେଲେ ? ତାଙ୍କ ପଟରେ କେତେ ଚୋପା ଆଉ ଟାକୁଆ ପଡ଼ିଛି ଦେଖୁଛ ତ ?"

ଏକଥା ଶୁଣି ବେଗମ୍‌ଙ୍କୁ ବଡ଼ ଲାଜ ଲାଗିଲା । ବେଗମ୍‌ଙ୍କ ଅବସ୍ଥା ବୀରବଲ ବୁଝିପାରିଲେ । ସେ ହସି କହିଲେ – "ହଜୁର, ମୁଁ ଦେଖୁଚି ଆପଣ ବେଗମ୍‌ଙ୍କଠାରୁ ଅଧିକ ଖାଇବା ଲୋଭୀ ।"

ଆକବର ପାଟିକରି କହିଲେ – "ମୁଁ କିପରି ତାଙ୍କଠୁଁ ବେଶି ଲୋଭୀ ହେଲି କୁହତ ?"

ବୀରବଲ କହିଲେ – "ଆପଣ ଦୁହେଁ ବସି ଆମ୍ବ ଖାଉଥିଲେ । ବେଗମ୍‌ସାହେବା କେବଳ ଆମ୍ବର ରସତକ ଖାଇଛନ୍ତି – ଟାକୁଆ

ଓ ଚୋପା ଛାଡ଼ିଦେଇଛନ୍ତି । କିନ୍ତୁ ଆପଣଙ୍କୁ ଆମ୍ବ ଏତେ ମିଠା ଲାଗିଲା ଯେ ଆପଣ ଆମ୍ବରସ ସହିତ ତାର ଟାକୁଆ ଓ ଚୋପା



ସବୁ ଖାଇଦେଇଛନ୍ତି । ତେଣୁ ଆପଣଙ୍କ ପଟରେ ଚୋପା ବା ଟାକୁଆ କିଛି ବି ପଡ଼ିନାହିଁ ।''

ଏହା ଶୁଣି ଆକବର ଓ ତାଙ୍କ ବେଗମ୍ ଦୁହେଁ ହସିଉଠିଲେ ।

## ବଡ଼ କିଏ ?

ଦିନେ ବାଦଶାହା ବେଶ୍ ଖୁସି ମନରେ ଦରବାରରେ ବସିଥାନ୍ତି । ତାଙ୍କ ମନକୁ ଏକ ଅଜବ ପ୍ରଶ୍ନ ଆସିଲା । ସେ ସଭାସଦ୍‌ମାନଙ୍କୁ

ପଚାରିଲେ– ‘‘କହିଲ ଦେଖି, ସ୍ୱର୍ଗର ଦେବରାଜ ଇନ୍ଦ୍ର ବଡ଼ ନା ମୁଁ ବଡ଼ ?’’

ଏପରି ପ୍ରଶ୍ନ ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। ଏ ପ୍ରଶ୍ନର କ’ଣ ଅବା ଉତ୍ତର ସେମାନେ ଦେବେ ? ଯଦି ଇନ୍ଦ୍ର ବଡ଼ ବୋଲି କହିବେ ତେବେ ବାଦଶାହା ରାଗକରିବେ। ଯଦି ବାଦଶାହା ବଡ଼ ବୋଲି କହିବେ ତେବେ ସେମାନେ ଖୋଷାମତିଆ ବୋଲି ବାଦଶାହା ଭାବିପାରନ୍ତି। କ’ଣ ଯେ ଉତ୍ତର ଦେବେ କେହି ଭାବିପାରିଲେନାହିଁ। ସେହି ସମୟରେ ବୀରବଲ ସଭାରେ ଆସି ପହଞ୍ଚିଲେ। ଆକ୍‌ବର ତାଙ୍କୁ ମଧ ଏ ପ୍ରଶ୍ନ ପଚାରିଲେ।

ବୀରବଲ ହସି ହସି କହିଲେ– ‘‘ଏ ତ ଅତି ସହଜ କଥା !’’

‘‘ସହଜ କଥା ମାନେ ?’’ –ସମ୍ରାଟ୍ ପଚାରିଲେ।

ବୀରବଲ କହିଲେ– ‘‘ଭଗବାନ ଆପଣଙ୍କୁ ଓ ଦେବରାଜଙ୍କୁ ତାଙ୍କ ତରାଜୁର ଦୁଇ ପଟରେ ବସାଇଚନ୍ତି। ଆପଣ ଦେବରାଜଙ୍କଠାରୁ ଢେର୍ ବଡ଼ ଓ ଅଧିକ ଓଜନ ହୋଇଥିବାରୁ ଆପଣଙ୍କ ପଟ ଭାରିହୋଇ ମର୍ତ୍ତ୍ୟମଣ୍ଡଳକୁ ଚାଲିଆସିଛି। ଦେବରାଜଙ୍କ ପଟ ହାଲୁକା ଅର୍ଥାତ୍ ସାନହୋଇଥିବାରୁ ଉପରକୁ ସ୍ୱର୍ଗକୁ ଉଠିଯାଇଛି। ତେଣୁ ଆପଣ ଦେବରାଜଙ୍କଠାରୁ ଢେର୍ ବଡ଼।’’

ଏ କଥା ଶୁଣି ବାଦଶାହ ଓ ଦରବାରର ସମସ୍ତେ ହସିଉଠିଲେ।

## ପ୍ରକୃତ ଅଳସୁଆ ବାଛିବାର ଉପାୟ

ଆକବର ବୀରବଲଙ୍କୁ ଥରେ କହିଲେ– ‘‘ବୀରବଲ, ଆମ ରାଜ୍ୟର ସବୁଠୁ ବଡ଼ ଅଳସୁଆ ଲୋକ କିଏ ମତେ କହିବ।’’

ବୀରବଲ କହିଲେ– ‘‘ହଜୁର, ଏ ତ ବଡ଼ କଷ୍ଟକାମ। ମତେ କେତେଟା ଦିନ ସମୟ ଦିଅନ୍ତୁ। ତା’ଛଡ଼ା ମୁଁ ଯେପରି କହିବି ସେପରି କରିବାକୁ ଆଦେଶ ଦିଅନ୍ତୁ।’’ ବୀରବଲଙ୍କ

ପରାମର୍ଶରେ ଆକବର ଘୋଷଣା କଲେ ଯେ ଦିଲ୍ଲୀନଗରୀରେ ଯେତେ ଅଳସୁଆ ଅଛନ୍ତି ସେମାନଙ୍କପାଇଁ ମାଗଣାରେ ଖାଦ୍ୟ, ବସ୍ତ୍ର ଓ ରହିବାପାଇଁ ଘର ଯୋଗାଇଦିଆଯିବ ।

ଏ ଘୋଷଣା ଶୁଣି ଅନେକ ପରିଶ୍ରମୀ ଲୋକ ବି କାମଧନ୍ଦା ଛାଡ଼ି ରାଜଦରବାରକୁ ଧାଇଁଲେ । ଅବସ୍ଥା ଏପରି ହେଲା ଯେ ରାଜକୋଷରୁ ବହୁ ଧନ ଖର୍ଚ୍ଚ ହେଲା । ବାଦଶାହା ଏଭଳି ଏକ ହୁକୁମ ଦେଇ ବଡ଼ ଭୁଲ କଲେ ବୋଲି ପରେ ଭାବିଲେ, କାରଣ ଅନେକ ପରିଶ୍ରମୀ ଲୋକ ଅଳସୁଆ ହୋଇଗଲେ । କ'ଣ କଲେ ଏ ଅବସ୍ଥା ସୁଧୁରିବ ବୋଲି ସେ ବୀରବଲଙ୍କୁ ପଚ଼ାରିଲେ ।

ବୀରବଲ କହିଲେ – ହଜୁର, ଚିନ୍ତା କରନ୍ତୁ ନାହିଁ, ମୁଁ ଏହାର ସମାଧାନ କରିଦେବି । ମୁଁ କହିଲାଭଳି କରାଯାଉ । ଯେଉଁମାନେ ଏଠାରେ ପଡ଼ିରହି ଖିଆପିଆ କରୁଚନ୍ତି ଓ ଆଶ୍ରୟ ନେଇଚନ୍ତି ସେମାନଙ୍କ ପାଇଁ ଯମୁନା ନଦୀ ତୀରରେ କୁଡ଼ିଆ ଗୁଡ଼ିଏ କରାଯାଉ । ସମସ୍ତଙ୍କୁ ସେଠି ରହିବାକୁ ଦିଆଯିବ । ଖାଇବାକୁ ଦିଆଯିବ । ପ୍ରକୃତରେ କେଉଁମାନେ ଅଳସୁଆ ମୁଁ ସେଇଠି ବାଛିଦେବି ।

ବୀରବଲ କହିଲା ଭଳି ଯମୁନାତୀରରେ ପତ୍ର କୁଡ଼ିଆ ତିଆରିହେଲା । ଅଳସୁଆ ଲୋକଗୁଡ଼ାକ ସେଠାକୁ ଚାଲିଲେ । ସେଇଠି ଖିଆପିଆ ହେଲା । ସେମାନେ ମହା ଆନନ୍ଦରେ ଖାଇପିଇ ସେଇଠି ରହିଲେ । ସେମାନେ ଭାବିଲେ – ଯାହାହେଉ ଆମପାଇଁ ବାଦଶାହା ଭଲ ବ୍ୟବସ୍ଥା କରିଦେଲେ ।

ଏମିତି ଦୁଇଦିନ ବିତିଗଲା । ହଠାତ୍ ଦିନେ ରାତିରେ ବୀରବଲଙ୍କ କଥାରେ ସବୁ କୁଡ଼ିଆଘରେ ନିଆଁ ଲଗାଇ ଦିଆଗଲା । କୁଡ଼ିଆଘର ଗୁଡ଼ିକ ହୁ ହୁ ହୋଇ ଜଳିଲା ।

ଘର ଜଳିବାଦେଖି ସେଥିରେ ରହିଥିବା ଲୋକମାନେ କୁଡ଼ିଆ ଛାଡ଼ି ଯେ ଯୁଆଡ଼େ ପଳାଇଲେ । କିନ୍ତୁ ଦୁଇଜଣ ଲୋକ ଗଲେ ନାହିଁ । ସେ ଦୁହେଁ ଏତେ ଅଳସୁଆ ଯେ ନିଆଁରେ ପୋଡ଼ିହୋଇ ମରିବେ ପଛକେ, ଜୀବନ ରକ୍ଷାପାଇଁ ମଧ୍ୟ ପଳାଇବାଲାଗି ଟିକିଏ

ପରିଶ୍ରମ କରିବାକୁ ନାରାଜ । ସେମାନେ ନିଆଁଲାଗିଥିବା କୁଡ଼ିଆରେ ସେମିତି ଶୋଇରହିଥାନ୍ତି ।



ବୀରବଲ ଦେଖିଲେ– ସବୁ ଲୋକ ଚାଲିଗଲେ –ସେ ଦୁଇଜଣ ଯିବାକୁ ନାରାଜ । ତେଣୁ ସେ ଲୋକ ପଠାଇ ସେଇ ଦୁଇ ଅଳସୁଆଙ୍କୁ ନିଆଁ ଭିତରୁ ନେଇଆସିଲେ ।

ବୀରବଲ ସେ ଦୁଇଜଣଙ୍କୁ ବାଦଶାହାଙ୍କ ପାଖକୁ ନେଇ କହିଲେ– "ମଣିମା, ଏ ଦୁଇଜଣ ହିଁ ଅସଲ ଅଳସୁଆ । ଏ ଦୁହେଁ ନିଆଁରେ ପୋଡ଼ି ମରିଥାନ୍ତେ ପଛକେ ଶୋଇବା ଜାଗାରୁ ଉଠୁନଥିଲେ ।"

ବୀରବଲ ଏହିପରି ଉପାୟରେ ରାଜ୍ୟର ସବୁଠାରୁ ବଡ଼ ଦୁଇ ଅଳସୁଆ ଲୋକ ବାଛିଦେଲେ ।

# ଗରିବକୁ ସାହାଯ୍ୟ

ମାଘମାସର ହାଡ଼ଭଙ୍ଗା ଶୀତ । ଥରେ ସେଇ ଶୀତ ସନ୍ଧ୍ୟାରେ ଆକବର ଓ ବୀରବଲ ବଗିଚ଼ାରେ ବୁଲୁଥାନ୍ତି । ଦୁଇଜଣଙ୍କ ଭିତରେ ଟଙ୍କା ଲୋଭ ବିଷୟରେ ଆଲୋଚ଼ନା ପଡ଼ିଲା । ବୀରବଲ କହିଲେ – ‘‘ଟଙ୍କା ଲାଗି ମଣିଷ ସବୁକିଛି କରିପାରେ । ଟଙ୍କାର ମୋହ ଖୁବ୍ ଟାଣ ।’’

ମାତ୍ର ଆକ୍‌ବର ଏ କଥାରେ ରାଜିହେଲେନାହିଁ । ସେ କହିଲେ – ‘‘ଟଙ୍କା କ’ଣ ଦୁନିଆରେ ଏତେ ବଡ଼ ? ଟଙ୍କା ପାଇଁ ମଣିଷ ସବୁକିଛି କରିପାରେ – ତୁମେ ପ୍ରମାଣ ଦେଇପାରିବ ?’’

ବୀରବଲ କହିଲେ – ‘‘ହଁ ହଜୁର, ଦେଇପାରିବି ।’’

ଆକବର – ‘‘ବେଶ୍, ସେଇଆ ହେଉ । ଏ ବଗିଚ଼ାରେ ଯେଉଁ ପୋଖରୀ ଅଛି ଏ ଶୀତ ରାତିରେ ତାର ପାଣି ହେମ କାକର ହୋଇଯାଏ । ଟଙ୍କା ପାଇଁ କୌଣସି ଲୋକ ଏ ଶୀତ ରାତିରେ ଏ ପାଣିରେ ସନ୍ଧ୍ୟାରୁ ରାତି ପାହିବା ପର୍ଯ୍ୟନ୍ତ ଠିଆରହିପାରିବ ?’’

ବୀରବଲ କହିଲେ – ‘‘ହଁ ମଣିମା, ରହିପାରିବ ।’’

ସମ୍ରାଟ୍ – ‘‘ଯଦି କେହି ରହିପାରିବ ତେବେ ତାକୁ ଶହେଟି ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦିଆଯିବ । ତୁମେ ଲୋକ ଠିକ୍ କର ।’’

ତା’ ପରଦିନ ସନ୍ଧ୍ୟା ସମୟକୁ ବୀରବଲ ଜଣେ ଅତି ଗରିବ ଲୋକକୁ ଆଣି ସମ୍ରାଟ୍‌ଙ୍କ ଆଗରେ ହାଜର କରାଇଲେ । ସମ୍ରାଟ୍ ଲୋକଟିକୁ ତାଙ୍କର ସର୍ତ୍ତ ଶୁଣାଇଦେଲେ । ଲୋକଟି ସେଥିରେ ରାଜି ହୋଇ ପୋଖରୀରେ ପଶିଲା । ସେ ଲୋକଟିକୁ ଜଗି ରହିବା ପାଇଁ ଚାରିଜଣ ପହରାଦାର ରହିଲେ ।

ଲୋକଟି ରାତିସାରା ପାଣିରେ ସେମିତି ଠିଆରହିଥାଏ । ରାତି ପାହି ସକାଳ ହେଲା । ଲୋକଟି ପାଣିରୁ ଉଠିଆସି ସମ୍ରାଟ୍‌ଙ୍କ

ନିକଟକୁ ଗଲା । ତା'ର ଅବସ୍ଥା କିଛି ଖରାପ ହୋଇନଥିବା ଦେଖି ସମ୍ରାଟ୍ ଆଶ୍ଚର୍ଯ୍ୟ ହୋଇଗଲେ । ସେ ଭାବିଥିଲେ ଲୋକଟା ଶୀତ ସହିନପାରି ପାଣିରୁ ବାହାରି ଆସିବ । ଯାହାହେଉ ତାକୁ ଶହେ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେବାପାଇଁ ଭଣ୍ଡାରରୁ ଅଣାହେଲା । ସ୍ୱର୍ଣ୍ଣମୁଦ୍ରା ଦେବା ଆଗରୁ ସମ୍ରାଟ୍ ଲୋକଟିକୁ ପଚ଼ାରିଲେ– ''ତୁମେ ଏ ସାରାରାତି ଥଣ୍ଡା ପାଣି ଭିତରେ କିପରି ରହିପାରିଲ ?''

ଲୋକଟି କହିଲା– ''ମଣିମା, ଆପଣଙ୍କ ନଅରର ଉପର ମହଲାରେ ଏକ ଦୀପ ଜଳୁଥିଲା । ଟଙ୍କା ଲୋଭରେ ମନ ଟାଣକରି ସେହି ଆଲୋକର ଶିଖାକୁ ଚାହିଁ ଚାହିଁ ମୁଁ ରାତିଟା କଟାଇଦେଲି ।''

ଏକଥା ଶୁଣି ଜଣେ ପାରିଷଦ ସଙ୍ଗେ ସଙ୍ଗେ କହିଲେ– ''ମଣିମା, ଏ ଲୋକ ସ୍ୱର୍ଣ୍ଣମୁଦ୍ରା ପାଇବା କଥା ନୁହେଁ । ସେ ଆମ ନଅରରେ ଜଳୁଥିବା ବତିରୁ ଉତ୍ତାପ ସଂଗ୍ରହ କରି, ଶୀତ ଦାଉରୁ ରକ୍ଷାପାଇ ରାତିଟା କଟେଇଦେଇଛି ।''

ରାଜାଗୋଜା ଙ– ଯାହା ବୁଝିବେ ସେଇଆ । ସମ୍ରାଟ୍ କହିଲେ – ''ଠିକ୍‌କଥା । ତେବେ ତାକୁ କିଛି ଦିଆଯିବନି ।''

ଏହାଶୁଣି ଲୋକଟି ବହୁତ କାନ୍ଦିଲା । କେତେ ବିକଳ ହୋଇ ମାଗିଲା । ତଥାପି ତାକୁ ମିଳିଲାନାହିଁ । ବୀରବଲ ଲୋକଟିକୁ ବୁଝାଇ ଘରକୁ ପଠାଇଦେଲେ । ଠିକ୍ ସମୟରେ ତାକୁ ଶହେଟି ସ୍ୱର୍ଣ୍ଣମୁଦ୍ରା ଦିଆଯିବ ବୋଲି ଭରସା ମଧ୍ୟ ଦେଲେ । ତା'ପରେ ବୀରବଲ ଘରକୁ ଚାଲିଗଲେ ।

× × × ×

ତା' ପରଦିନ ବୀରବଲ ଦରବାରକୁ ଠିକ୍ ସମୟରେ ଆସିଲେନାହିଁ । ତାଙ୍କ ଯୋଗୁଁ ରାଜକାର୍ଯ୍ୟ ଅଟକିଲା । ଦେଖୁ ଦେଖୁ ଦି'ପହର ହେଲା– ତଥାପି ବୀରବଲ ଆସିଲେନାହିଁ । ତେଣୁ ଆକବର ଜଣେ ସିପାହିକୁ ତାଙ୍କ ଘରକୁ ପଠାଇଲେ ଡାକିଆଣିବାକୁ ।

ସିପାହୀ ଯାଇ ବୀରବଲଙ୍କୁ ରାଜାଙ୍କ ଖବର ଜଣାଇଲା ।

ବୀରବଲ କହିଲେ– ''ତୁମେ ଦେଖୁଛ ତ ମୁଁ ରୋଷେଇ କରୁଛି। ରୋଷଇଟା ସାରିଦେଇ ମୁଁ ଯିବିବୋଲି ସମ୍ରାଟ୍‌ଙ୍କୁ ଜଣାଇଦେବ।''

ସିପାହୀ ଫେରିଆସି କହିଲା– ''ହଜୁର, ବୀରବଲ ଟିକେ ଡେରିକରି ଆସିବେ।''

ଆକ୍‌ବର – ''କାହିଁକି ?''

ସପାହୀ –''ସେ ରୋଷେଇ କରୁଛନ୍ତି। ମଣିମା ଗୋଟିଏ କଥା କହିବି ?''

ଆକ୍‌ବର – ''କ'ଣ କୁହ ?''



ସିପାହୀ –''ମୁଁ ଦେଖିଲି ଯେ ବୀରବଲ ତାଙ୍କ ଘର ବାଡ଼ିପଟ ଆମ୍ବଡାଳରେ ଗୋଟିଏ ଶିକା ବାନ୍ଧି ସେଥିରେ ହାଣ୍ଡିଟିଏ ଥୋଇଚ୍ଛନ୍ତି। ସେଇ ହାଣ୍ଡିରେ ଭାତ ରାନ୍ଧିବାକୁ ସେ ଚାଉଳ ପକାଇଲେ। ଏଣେ ଭୂମି ଉପରେ ନିଆଁ ଜାଳୁଚନ୍ତି। ସେ ନିଆଁରେ କେତେବେଳେ ଯେ ଭାତ ଫୁଟିବ ମୁଁ ଜାଣିପାରୁନି। ନିଆଁର ଧାସ ତ ହାଣ୍ଡି

ପାଖକୁ ମୋଟେ ଯାଇପାରିବନି ! ଏ କି ଅଜବ ରୋଷେଇ ? ରୋଷେଇ ସରିବ ନା ସେ ଦରବାରକୁ ଆସିବେ ?

ଏ କଥା ଶୁଣି ସମସ୍ତେ ହୋ ହୋ ହୋଇ ହସିଉଠିଲେ । ସମ୍ରାଟ୍ ବୁଝିଲେ – ଏହା ପଛରେ ନିଶ୍ଚୟ କିଛି ଗୋଟିଏ ରହସ୍ୟ ଅଛି । ତେଣୁ ସେ ସଙ୍ଗେ ସଙ୍ଗେ ବୀରବଲଙ୍କ ଘରକୁ ଗଲେ । ସମ୍ରାଟ୍ ପହଞ୍ଚି ଦେଖିଲେ ଦଶ-ବାରହାତ ଉଚ୍ଚରେ ଆମ୍ବଗଛ ଡାଳରେ ହାଣ୍ଡି ବନ୍ଧାହୋଇଛି । ମାଟି ଉପରେ ନିଆଁଜାଳି ବୀରବଲ ସେଠାରେ ଜଗିବସିଛନ୍ତି ।

ସମ୍ରାଟ୍ କହିଲେ – ''ହଇହୋ ବୀରବଲ, ଏ କି ବିଚିତ୍ର କଥା ? ହାଣ୍ଡି ଏତେ ଉଚ୍ଚରେ ରଖିଚ – ତଳେ ନିଆଁ ଜାଳୁଚ । ସେଥିରୁ କିପରି ତାତି ହାଣ୍ଡିକୁ ଯିବ ଯେ ଭାତ ଫୁଟିବ ? ଏ କି ଅଘଟଣ କଥା ?''

ବୀରବଲ କହିଲେ – ''ହଜୁର, ଆଜିକାଲ ଏପରି ଅଘଟଣ କଥା ଘଟୁଚି । ଅସମ୍ଭବ ବି ସମ୍ଭବ ହେଉଚି ।''

ସମ୍ରାଟ୍ କହିଲେ – ''କିପରି ?''

ବୀରବଲ କହିଲେ – ''ଶୀତ ରାତିରେ ପୋଖରୀ ପାଣିରେ ଲୋକଟି ଠିଆରହିଥିଲା । ରାଜମହଲର ଉପର ମହଲାର ଦୀପ ଶିଖାରୁ ସେ ଲୋକଟି ଉତ୍ତାପ ସଂଗ୍ରହ କରି ଶୀତ ଦାଉରୁ ରକ୍ଷାପାଇଲା । ତାହାହେଲେ ମାଟି ଉପରେ ଜଳୁଥିବା ନିଆଁର ତାତିରେ ଗଛରେ ଝୁଲୁଥିବା ହାଣ୍ଡିରେ ଚାଉଳ ଭାତ ହେବନାହିଁ କାହିଁକି ?''

ଏକଥା ଶୁଣି ଆକବର ହତବୁଦ୍ଧି ହୋଇଗଲେ । ତାଙ୍କର ସେ ଲୋକଟି କଥା ମନେପଡ଼ିଗଲା । ସେ ସଙ୍ଗେ ସଙ୍ଗେ କହିଲେ – ''ବୀରବଲ, ତୁମେ ସେ ଲୋକଟିକୁ ଡାକିଆଣ । ମୁଁ ତାକୁ ଶହେଟି ସ୍ୱର୍ଣ୍ଣମୁଦ୍ରା ଦେଇ ମୋର କଥା ରଖିବି ।''

ବୀରବଲ ସେ ଲୋକଟିକୁ ଡକେଇଆଣିଲେ । ତାକୁ ଶହେଟି ସ୍ୱର୍ଣ୍ଣମୁଦ୍ରା ମିଳିଲା ।

# ଢେଲା ବଦଳରେ ପଥର

ଥରେ ଜଣେ ରାଜକର୍ମଚାରୀଙ୍କ ନିଜ ଦୋଷରୁ ସମ୍ରାଟ୍ ତାଙ୍କ ଉପରେ ଖୁବ୍ ରାଗିଯାଇ ତାଙ୍କୁ ଅପମାନିତ କଲେ। ସେ ଅପମାନ ପାଇଁ କର୍ମଚାରୀ ଜଣକ ବୀରବଲଙ୍କୁ ମନେ ମନେ ଦାୟୀକଲା। ସୁବିଧା ମିଳିଲେ ବୀରବଲଙ୍କୁ ପାନେ ଦେବେ ବୋଲି ସୁଯୋଗ ଅପେକ୍ଷାରେ ରହିଲା।

କର୍ମଚାରୀଜଣକ ଏକ ଉପାୟ କଲା। ବାଦଶାହାଙ୍କ ସେବାକାରୀ ବାରିକକୁ ହାତକରି ବୀରବଲଙ୍କୁ କିପରି ଜବତ କରିବ ବୋଲି ନାପିତ ସଙ୍ଗେ ଗୁପ୍ତ ପରାମର୍ଶ କଲା। ଷଡ଼ଯନ୍ତ୍ର ଠିକ୍ ହେଲା – କେବଳ ସୁଯୋଗକୁ ଅପେକ୍ଷା ରହିଲା।

ସେ ସୁଯୋଗ ଆସିଲା। ନାପିତ ବାଦଶାହାଙ୍କୁ ଖିଅର କରେ। ତାଙ୍କ ଦେହରେ ତେଲ ଘଷି ମୋଡ଼ାମୋଡ଼ି କରେ। ନାପିତ ଏ ସେବା କଲାବେଳେ ବାଦଶାହା ଟିକେ ଢୁଳାଇପଡ଼ନ୍ତି। ସେହି ସୁଯୋଗରେ ନାପିତ ତା'ର ଅନେକ କାମ ହାସଲ କରିପାରେ।

ସେଦିନ ସେମିତି ସେବା କରୁ କରୁ ନାପିତ କହିଲା – "ମଣିମା, ଆପଣଙ୍କ ବାପାଙ୍କୁ ମୁଁ ଏମିତି ତେଲ ଲଗାଇ ଦେହ ମୁଣ୍ଡ ମାଲିସ କରୁଥିଲି। ଆଉ ମୋ ବାପା ଆପଣଙ୍କ ଅଜାଙ୍କର ଏମିତି ସେବା କରୁଥିଲେ। ବାପା କହୁଥିଲେ – ଆପଣଙ୍କ ଅଜାଙ୍କର ବାଳଗୁଡ଼ିକ ରେଶମ ପରି।"

ଆକ୍‌ବର କହିଲେ – "ହଁ, ହୋଇଥାଇପାରେ।"

କିଛି ସମୟ ପରେ ନାପିତ କହିଲା – "ଯଦି ଆପଣ ଭରସା ଦେବେ ତେବେ ଗୋଟିଏ କଥା କହିବି।"

– "କ'ଣ କହିବୁ କହ।"

ବାରିକ କହିଲା – "ଆପଣ ଏଠାରେ ଅତି ସୁଖରେ ଅଛନ୍ତି। କିନ୍ତୁ ଆପଣଙ୍କ ବାପା ଓ ଅଜା ସ୍ୱର୍ଗରେ କିପରି ଅଛନ୍ତି ଜାଣନ୍ତି କି ?"

ଆକବର– ''ସେମାନେ ତ ସ୍ୱର୍ଗରେ ଅଛନ୍ତି– ସେମାନଙ୍କ କଥା ମୁଁ କେମିତି ଜାଣିବି ?''

ବାରିକ କହିଲା– ''ହଜୁର, ଜାଣିବାର ଗୋଟିଏ ଉପାୟ ଅଛି। ଜଣେ ତାନ୍ତ୍ରିକ ମୋର ଚିହ୍ନା ଅଛନ୍ତି। ସେ ମଣିଷକୁ ମନ୍ତ୍ରବଳରେ ସ୍ୱର୍ଗକୁ ପଠାଇଦିଅନ୍ତି ଓ ପୁଣି ମନ୍ତ୍ର ବଳରେ ଫେରାଇ ଆଣନ୍ତି।''

ଆକ୍‌ବର– ''ସତେ ନା କ'ଣ ? ଭାରି ଆଶ୍ଚର୍ଯ୍ୟ କଥା ତ !''

ବାରିକ କହିଲା– ''ଲୋକଟି ସ୍ୱର୍ଗକୁ ଯାଇ ଆପଣଙ୍କ ପିତା ଓ ଅଜାଙ୍କ ଖବର ନେଇ ଫେରିଆସିବି।''

ସମ୍ରାଟ୍ କହିଲେ– ''ତେବେ ସେମାନଙ୍କ ଖବର କିପରି ଜାଣିବା ବ୍ୟବସ୍ଥା କରେ।''

ବାରିକ କହିଲା– ''ମୁଁ ସବୁ ବ୍ୟବସ୍ଥା କରିଦେବି। ତେବେ ତାନ୍ତ୍ରିକ କହିଛି– ଯେଉଁ ଲୋକ ସ୍ୱର୍ଗକୁ ଯିବ ସେ ଭାରି ଚାଲାକ୍ ଓ ବୁଦ୍ଧିମାନ୍ ହୋଇଥିବା ଦରକାର।''

ବାଦଶାହା କହିଲେ– ''ହଁ ସତକଥା। ଚାଲାକ ଲୋକ ନହେଲେ କିଏ ଏସବୁ ଖବର ସଂଗ୍ରହ କରିବ ? ତେବେ କାହାକୁ ପଠାଇବା ?''

ବାରିକ କହିଲା– ''ସେ ତାନ୍ତ୍ରିକ ଛାମୁଙ୍କ ଦରବାରର ସମସ୍ତଙ୍କୁ ଜାଣେ। ତେବେ ସେମାନଙ୍କ ମଧ୍ୟରୁ ବୀରବଲଙ୍କୁ ସେ ସବୁଠୁ ବେଶି ପସନ୍ଦ କରିଛନ୍ତି। ସେଇ ଏକା ଏ କାମ କରିପାରିବେ।''

ସମ୍ରାଟ୍ କହିଲେ– ''ହଁ, ତୁ ଠିକ୍ କହିଛୁ। ପ୍ରକୃତରେ ବୀରବଲହିଁ ଏ କାମ କରିପାରିବେ। ତେବେ ସେ କିପରି ସ୍ୱର୍ଗକୁ ଯିବେ ?''

ବାରିକ କହିଲା– ''ବୀରବଲଙ୍କୁ ସ୍ନାନ କରାଇ ନୂଆ ଲୁଗା ପିନ୍ଧାଇ ଶ୍ମଶାନକୁ ନିଆଯିବ। ସେଠାରେ ଗୋଟିଏ ବେଦୀ ତିଆରି ହୋଇଥିବ। ବୀରବଲ ସେ ବେଦୀରେ ବସିବା ପରେ ତାଙ୍କୁ ଚନ୍ଦନ

କାଠରେ ଭଲକରି ଘୋଡ଼ାଇ ଦେବାକୁ ହେବ। ତା'ପରେ ତାନ୍ତ୍ରିକ ମହାରାଜ ମନ୍ତ୍ର ପାଠକରି ସେହି କାଠରେ ନିଆଁ ଲଗାଇଦେବେ। ବୀରବଲ ସେଇ ବାଟରେ ସ୍ୱର୍ଗକୁ ଯିବେ। ସେଠାରେ ପହଞ୍ଚି ଆପଣଙ୍କ ବାପା ଓ ଅଜାଙ୍କ ଖବର ବୁଝି ପୁଣି ଏଠାକୁ ଫେରିଆସିବେ। ତାନ୍ତ୍ରିକ ମହାରାଜଙ୍କ ନିକଟରେ ଅସାଧ କିଛି ନାହିଁ।''

ବାରିକ ଯିବାପରେ ବାଦଶାହା ବୀରବଲଙ୍କୁ ଡକେଇ ସବୁ କଥା ଶୁଣେଇଦେଲେ। ବୀରବଲ ଏହା ଶୁଣି ତାଟକା ହୋଇଗଲେ। ସେ ଜାଣିଲେ ତାଙ୍କୁ ମାରିଦେବାକୁ କେହି ଏ ଷଡ଼ଯନ୍ତ୍ର କରିଛି। ତେବେ ମନାକଲେତ ବାଦଶାହା ଶୁଣିବେ ନାହିଁ– ଭାରି ଏକବୁଝା ଲୋକ। ତେଣୁ ସେ କହିଲେ– ''ହଉ ମଣିମା, ମୁଁ ଯିବି। ତେବେ ମୋତେ ଏକ ମାସ ସମୟ ଦରକାର। ଗୋଟିଏ ମାସ ଜପତପ କରି ଦେହକୁ ଶୁଦ୍ଧ କରିବା ଦରକାର– ନହେଲେ ସ୍ୱର୍ଗକୁ ଯାଇହେବନାହିଁ। ତା'ପରେ ମୋତେ ସ୍ୱର୍ଗକୁ ପଠାଇବାପାଇଁ ବେଦୀଟି କେଉଁଠି ତିଆରି ହେବ ସେ କଥା ଏବଠୁ କହିଦେବା ଦରକାର। ମୁଁ ତ ଏକ ମାସ ପାଇଁ ସ୍ୱର୍ଗରେ ରହିବି– ଏହା ଭିତରେ ମୋ ପରିବାର ଏଠାରେ ଚଳିବାପାଇଁ କିଛି ଟଙ୍କା ଦରକାର। ଟଙ୍କା ମୋତେ ଏବେ ଦେଇଦେବେ।''

ସମ୍ରାଟ୍ କହିଲେ– ''ହଁ, ଟଙ୍କା ନେଇଯାଅ। ଆଉ ସେ ବେଦୀଟା ତୁମ ଘର ପଛପଟ ଶ୍ମଶାନରେ ତିଆରି ହେବ– ସେ କଥା ବି ଠିକ୍ ହୋଇଛି।''

ବୀରବଲ ଟଙ୍କା ନେଇ ଚାଲିଗଲେ। ଚକ୍ରାନ୍ତକାରୀ ରାଜକର୍ମଚାରୀ ଓ ବାରିକ ଏ ଖବର ଶୁଣି ଭାରି ଖୁସିହୋଇଗଲେ। ସେମାନେ ଭାବିଲେ– ଏତେ ଦିନକେ ବୀରବଲ ଜାଲରେ ପଡ଼ିଲା– ଏଥର ମରିବ।

ବୀରବଲ ଟଙ୍କା ନେଇ ତାଙ୍କ ବାଡ଼ିପଟ ଶ୍ମଶାନରୁ ତାଙ୍କ ଘର ପର୍ଯ୍ୟନ୍ତ ଏକ ସୁଡ଼ଙ୍ଗ ଗୋପନରେ ତିଆରିକରାଇଲେ। ସୁଡ଼ଙ୍ଗର ମୁହଁଟି ଏପରି ଘୋଡ଼ାଇଦେଲେ ଯେ କେହି ଏ ବିଷୟରେ କିଛି ଜାଣିପାରିଲାନାହିଁ।

ମାସ ଶେଷକୁ ବେଦୀ ତିଆରି ସରିଲା । ଜଣେ ଜଟାଧାରୀ ତାନ୍ତ୍ରିକ ଆସି ବେଦୀ ନିକଟରେ ମନ୍ତ୍ରପାଠ କଲା । ବୀରବଲ ବେଦୀରେ ବସିଲେ । ଚନ୍ଦନ କାଠ ତାଙ୍କ ଉପରେ ଓ ଚାରିପଟେ ସଜଡ଼ାହେଲା । ମନ୍ତ୍ର ପାଠକରି ତାନ୍ତ୍ରିକ କାଠରେ ନିଆଁ ଲଗାଇଲା ।

ନିଆଁ ହୁତୁହୁତୁ ହୋଇ ଜଳିଲା । ବୀରବଲ କାଠ ଭିତରେ ଥାଇ ଏକ ପ୍ରକାର ଗୁଣ୍ଡ ନିଆଁକୁ ଛାଟିଦେଲେ । ଫଳରେ ଶ୍ମଶାନର ଚାରିଆଡ଼େ କଳା ଧୂଆଁ ଛାଇହୋଇଗଲା । ସେହି ସୁଯୋଗରେ ବୀରବଲ ବେଦୀ ତଳେ ଥିବା ସୁଡ଼ଙ୍ଗ ଦେଇ ନିଜ ଘରକୁ ଚାଲିଗଲେ । ବାରିକ ଓ ରାଜକର୍ମଚାରୀ ଭାବିନେଲେ ଯେ ଏତେ ଦିନେ ବୀରବଲ ମଲା – କଣ୍ଟା ଗଲା । ପ୍ରତିଶୋଧ ନେଇପାରିଥିବାରୁ ଷଡ଼ଯନ୍ତ୍ରକାରୀ ମହାଖୁସି ।

ବୀରବଲ ଘରକୁ ଆସି ପ୍ରାୟ ମାସେ ଯାଏଁ ଘରେ ଲୁଚି ରହିଲେ । ବାଳ ଓ ଦାଢ଼ି ରଖିଲେ । ମଞ୍ଜୁଆତି ଗଛର ପତ୍ର ବାଟି ଦେହସାରା ବୋଳିଦେଲେ । ଫଳରେ ତାଙ୍କର ଦେହ ଲାଲବର୍ଣ୍ଣ ହୋଇଗଲା । ନାନା ରଙ୍ଗର କନାଦେଇ ଏକ ବିଚିତ୍ର ଧରଣର ପୋଷାକ ତିଆରିକଲେ । ତାକୁ ପିନ୍ଧି ସେ ଦିନେ ଯାଇ ରାଜଦରବାରରେ ପହଞ୍ଚିଲେ ।

ପ୍ରଥମେ ତାଙ୍କୁ ଦେଖି କେହି ଚିହ୍ନିପାରିଲେନାହିଁ । ଯେତେବେଳେ ଚିହ୍ନିଲେ – ସମସ୍ତେ ଅବାକ୍ ହେଲେ । ଆକବର ଆନନ୍ଦରେ ଅଧୀର ହୋଇ କହିଲେ – "ବୀରବଲ, ତୁମେ ସ୍ୱର୍ଗରୁ ଫେରିଆସିଥିବାରୁ ମୁଁ ଖୁବ୍ ଆନନ୍ଦିତ । ଦେଖୁଛି ତୁମର ଚେହେରା ଅନ୍ୟରକମର ହୋଇଯାଇଛି ।"

ବୀରବଲ କହିଲେ – "ସ୍ୱର୍ଗକୁ ଗଲେ ଏମିତି ଚେହେରା ହୋଇଯାଏ ମଣିମା !"

ଆକବର କହିଲେ – "ମୋ ବାପା ଓ ଅଜାଙ୍କ ସହ ତୁମର ଦେଖା ହେଲା ତ ?"

ବୀରବଲ – "ହଁ ମଣିମା ।"

ଆକ୍‌ବର – ''ସେମାନେ କେମିତି ଅଛନ୍ତି ?''

ବୀରବଲ – ''ଭଲଅଛନ୍ତି ।''

ଆକ୍‌ବର – ''କ'ଣ କିଛି କହିଛନ୍ତି ?''



ବୀରବଲ – ''ସେମାନେ ଆପଣଙ୍କୁ ଆଶୀର୍ବାଦ କରିଛନ୍ତି । ଗୋଟିଏ କାମ କରିବାକୁ ସେମାନେ ଆପଣଙ୍କୁ କହିଛନ୍ତି ।''

ଆକ୍‌ବର – ''ମୋତେ କହିଛନ୍ତି ? କି କାମ ?''

ବୀରବଲ କହିଲେ – ''ସ୍ୱର୍ଗରେ ସବୁ ଅଛି – କିନ୍ତୁ ସେଠାରେ ବାରିକ ନାହାଁନ୍ତି । ସେମାନେ ସ୍ୱର୍ଗକୁ ଯିବାଦିନରୁ ସେମାନଙ୍କର ମୁଣ୍ଡବାଳ ଓ ଦାଢ଼ି ବଢ଼ିବଢ଼ି ଏବେ ତଳେ ଘୁଷୁରୁଚି । ସେମାନେ

ଚାଲବୁଲ କଲାବେଳେ ସେହି ଦାଢ଼ି ଓ ବାଳକୁ ଝୁଣ୍ଟିପଡୁଚନ୍ତି। ବେଳେବେଳେ ମଧ ଖଣ୍ଡିଆଖାବରା ହୋଇ ବହୁ କଷ୍ଟ ଭୋଗକରୁଚନ୍ତି।''

ଆକ୍‌ବର କହିଲେ– ''ତେବେ ବଡ଼ ଦୁଃଖର କଥା। କିନ୍ତୁ ମୁଁ ଏଠାରୁ ସେମାନଙ୍କ ପାଇଁ କ'ଣ କରିପାରିବି?''

ବୀରବଲ କହିଲେ– ''ସେମାନେ କହିଛନ୍ତି ଆପଣଙ୍କ ସେବାକାରୀ ଯେଉଁ ବାରିକଟି ଅଛି ତାକୁ ସେମାନଙ୍କର ଭାରି ପସନ୍ଦ। ସେ ବାରିକ ଆପଣଙ୍କ ବାପାଙ୍କର ଖୁବ୍ ଭଲ ସେବା କରିଥିଲା ବୋଲି କହୁଥିଲେ। ସେହି ବାରିକକୁ ଶୀଘ୍ର ସ୍ୱର୍ଗକୁ ପଠାଇଦେବାକୁ ସେମାନେ କହିଛନ୍ତି।''

ଆକ୍‌ବର କହିଲେ– ''ଭଲକଥା– ତା'ହେଲେ ଆଉ ଡେରିକରିବା ଦରକାର ନାହିଁ। ସେ ବାରିକକୁ ଡକାଅ।''

ବାରିକ ଆସି ବୀରବଲଙ୍କୁ ପ୍ରଥମେ ଚିହ୍ନି ପାରିଲାନାହିଁ। ଯେତେବେଳେ ଚିହ୍ନିଲା, ତା'ର ମୁଣ୍ଡ ଘୂରିଗଲା।

ଆକ୍‌ବର ବାରିକକୁ କହିଲେ– ''ବୀରବଲ ସ୍ୱର୍ଗରୁ ଖବର ଆଣିଛନ୍ତି ଯେ ମୋ ବାପା ଓ ଅଜାଙ୍କର ବାଳ ଦାଢ଼ି ବଢ଼ିଯାଇଛି। ତୁ ଯାଇ ସେମାନଙ୍କର ବାଳ ଓ ଦାଢ଼ି କାଟିବାକୁ ସେମାନେ ଖବର ପଠାଇଛନ୍ତି। ତୁ ଶୀଘ୍ର ଯିବାକୁ ପ୍ରସ୍ତୁତ ହୁଅ।''

ଆକବରଙ୍କ କଥା ଶୁଣି ବାରିକ କାନ୍ଦି କାନ୍ଦି ଆକବରଙ୍କ ଗୋଡ଼ ଧରିପକାଇଲା। କାନ୍ଦିକାନ୍ଦି କହିଲା– ''ମୋତେ ରକ୍ଷାକରନ୍ତୁ ହଜୁର।''

ଆକ୍‌ବର ବାରିକର କାନ୍ଦ ଶୁଣି ଅବାକ୍ ହୋଇଗଲେ। ବୀରବଲ ତା'ପରେ ସବୁ ଷଡ଼ଯନ୍ତ୍ର କଥା ଆକବରଙ୍କୁ ଜଣାଇଦେଲେ। ଆକ୍‌ବର ଏକଥା ଶୁଣି ଭୀଷଣ ରାଗିଗଲେ। ସେ ସେହି ରାଜକର୍ମଚାରୀ ଓ ବାରିକକୁ କଠିନ ଦଣ୍ଡ ଦେଇ ରାଜ୍ୟରୁ ବାହାରକରିଦେଲେ।

# ବୀରବଲ୍ ଚୋର ଧରିଲେ

ରାଜଧାନୀ ଦିଲ୍ଲୀରେ ଥରେ ବହୁତ ଚୋରୀ ଡକାୟତି ହେଲା। ଯେତେ ପ୍ରକାର କଡ଼ା ପହରା ଦେଲେ ମଧ୍ୟ ଚୋରି ବନ୍ଦହେଲାନାହିଁ। କ'ଣ କରିବେ ବୋଲି ଆକବର ଚିନ୍ତିତ ହେଲେ। ସେ ଏ ବିଷୟରେ ବୀରବଲଙ୍କ ସହ ବିଚାରକଲେ।

ସବୁ ଶୁଣିସାରି ବୀରବଲ କହିଲେ– "ହଜୁର, ଏମିତି ଯେ ଘଟିବ ମୁଁ ଜାଣେ। କୌଶଳ କରି ଏହାର ପ୍ରତିକାର କରିବାକୁ ହେବ।

ଆକ୍‌ବର କହିଲେ– "ଯାହା କରିବାର କଥା କର– ଏ କାମରେ ତୁମେ ମୋଠାରୁ ସବୁ ପ୍ରକାର ସାହାଯ୍ୟ ପାଇବ।"

ବୀରବଲ କହିଲେ– "ତେବେ ଆପଣ ହୁକୁମ ଦିଅନ୍ତୁ ଯେ ମୁଁ ଯାହାକୁ ଯାହା ଆଦେଶ ଦେବି, ସେ ତାହା କରିବ।"

ଆକବର କହିଲେ– "ବେଶ୍ ତାହା ହେଲା। ତୁମର କାମ ଆରମ୍ଭକର।"

ଦିନେ ସନ୍ଧ୍ୟାରେ ବୀରବଲ ତାଙ୍କ ଘରକୁ ନଗରପାଳଙ୍କୁ ଡକେଇ ଚୋରୀ ହେବାର କାରଣ ପଚାରିଲେ। ନଗରପାଳ କହିଲେ– "କେତେକ ଅକୁହା କଥା କହିହେଉନି। ଏ ସବୁ କାମରେ ବଡ଼ ବଡ଼ ଲୋକଙ୍କର ହାତ ରହିଛି। ତେବେ ମୋତେ କ'ଣ କରିବାକୁ ହେବ କୁହନ୍ତୁ।"

ବୀରବଲ କହିଲେ– "ଶେର୍ ଅଲ୍ଲୀ ବୋଲି ଯେଉଁ ଦାଗୀ ଡକାୟତ ଥିଲା ସେ ଏବେ କେଉଁଠି ରହୁଛି?"

ନଗରପାଳ କହିଲେ– "ସେ ଏବେ ଡକାୟତି ଛାଡ଼ିଦେଇ ତା'ର ଗାଁରେ ଚାଷବାସ କରି ରହୁଛି।"

ବୀରବଲ– "ବେଶ୍, ସେଇ ଲୋକ ମୋର ଦରକାର। ତାକୁ ମୋ ନିକଟକୁ ପଠାଇଦିଅନ୍ତୁ।"

ନଗରପାଳ ବିଦାୟନେଲେ। ପ୍ରାୟ ଦୁଇଦିନ ପରେ ଶେର୍‌ଅଲ୍ଲୀ ଆସି ବୀରବଲଙ୍କ ସହ ଦେଖାକଲା। ବୀରବଲ ତା' ସହିତ ଗୁପ୍ତରେ କ'ଣ ମନ୍ତ୍ରଣା କଲେ। ଶେର୍‌ଅଲ୍ଲୀ ଶେଷରେ କହିଲା– ''ଦେଖନ୍ତୁ ମୁଁ ଯେପରି କିଛି ବିପଦରେ ନପଡ଼େ।''

ବୀରବଲ କହିଲେ– ''ମୋ କଥା ମାନି କାମ କର– କେବେହେଲେ ବିପଦରେ ପଡ଼ିବ ନାହିଁ।''

ଏହାପରେ ଶେର୍‌ଅଲ୍ଲୀ ଚାଲିଗଲା। ମଝିରେ ମଝିରେ ଆସି ବୀରବଲଙ୍କୁ ଦେଖାକରେ।

ସମ୍ରାଟ୍‌ଙ୍କର ଜଣେ ମନ୍ତ୍ରୀଙ୍କର ଏକ ଶାଳକ ଥାଏ। ତା'ର ନାମ ଦରିୟା ଖାଁ। ସେ ଦିଲ୍ଲୀର ଜଣେ ଧନୀ ଓ ପ୍ରଭାବଶାଳୀ ଲୋକ। ମନ୍ତ୍ରୀଙ୍କ ଶାଳକହେତୁ ଲୋକେ ତାକୁ ଭୟକରନ୍ତି। ଦିନେ ଶେର୍‌ଅଲ୍ଲୀ ଯାଇ ତା' ସହ ଦେଖାକଲା। ଦରିୟା ଖାଁ କହିଲା– ''କି ଶେର୍, ଆଜିକାଲି କ'ଣ କରୁଛୁ?'' ଶେର୍ ଅଲ୍ଲୀ କହିଲା– ''ଗାଁରେ ରହି ଚାଷବାସ କରୁଛି। କିନ୍ତୁ ସେଥିରେ ପରିବାର ପୋଷି ହେଉନି। କିଛି ବ୍ୟବସାୟ କରିବାକୁ ସହରକୁ ଆସିଛି।''

ଦରିୟା ଖାଁ କହିଲା– ''ସହରରେ ତୁ ବା କି ବ୍ୟବସାୟ କରିବୁ? ତୁ ତ ଡକାୟତି ଛଡ଼ା ଅନ୍ୟ କିଛି କାମ କରିପାରିବୁ ନାହିଁ। ତୁ ମୋ କଥା ମାନିଲେ ଭଲ ରୋଜଗାର କରିବୁ। ଏଥିରେ ତୋର କାହାକୁ ଭୟ କରିବାର ନାହିଁ।''

ଶେର୍ କହିଲା– ''କି କଥା ଆପଣଙ୍କର ମାନିବି?''

ଏହା ପରେ ଶେର୍ ଅଲ୍ଲୀ ଓ ଦରିୟା ଖାଁ ଭିତରେ କ'ଣ ସବୁ ଗୁପ୍ତ ପରାମର୍ଶ ହେଲା। ଶେର୍ ଅଲ୍ଲୀ ଘରକୁ ଫେରିବାବେଳକୁ ତା' ମନରେ ଆନନ୍ଦ ଭରିଯାଇଥାଏ।

× × × ×

ଏଣେ ବୀରବଲ ତୀର୍ଥଯାତ୍ରା କରି ଚାଲିଗଲେ। ସେ ଛଅମାସ ଆଗରୁ ଫେରିବେନି।

ଏହାର କିଛିଦିନ ପରେ ପ୍ରଚାର ହେଲା ଯେ ଆଫ୍‌ଗାନିସ୍ଥାନର ଜଣେ ବଡ଼ ଧନୀ ସୌଦାଗର ହୀରା ବ୍ୟବସାୟ କରିବାକୁ ଦିଲ୍ଲୀ ନଗରୀକୁ ଆସିଛନ୍ତି। ସେ ବାଦଶାହାଙ୍କୁ ଏକ ଦାମିକା ହୀରାମୁଦି ଉପହାର ଦେଇ ଦିଲ୍ଲୀରେ ବ୍ୟବସାୟ କରିବାକୁ ଅନୁମତି ନେଲେ। ସୌଦାଗରର ନାମ ମହମ୍ମଦ ବେଗ୍। ଏ ଖବର ଦିଲ୍ଲୀର ଚାରିଆଡ଼େ ପ୍ରଚାର ହୋଇଗଲା। ସେ ଦିଲ୍ଲୀର ଗୋଟିଏ ବଡ଼ ଘର ଭଡ଼ାନେଇ ବ୍ୟବସାୟ ଆରମ୍ଭକଲେ।

ଏ ଖବର ଦରିୟା ଖାଁ ପାଖରେ ପହଞ୍ଚିଲା। ଦରିୟା ଖାଁର ଘରେ ତା' ଦଳର ଲୋକଙ୍କର ଗୋପନ ଆଲୋଚନା ସଭା ବସିଲା। କିପରି ମହମ୍ମଦ ବେଗର ହୀରା ଲୁଟ୍ କରାଯିବ ସେଇ ମସୁଧା ଚାଲିଲା। ସେ ପାଖକୁ ଯାଇ ଶେର୍ ଅଲ୍ଲୀ ହାତ ଯୋଡ଼ି କହିଲା– "ହଜୁର, ସୌଦାଗର ଉପର ମହଲାରେ ରହନ୍ତି। ତାଙ୍କର ତିନିଜଣ ଗୁମାସ୍ତା ତଳ ମହଲାରେ ରହନ୍ତି।"

ଦରିୟା ଖାଁ କହିଲା– "ତା'ର ଦାମୀ ଜିନିଷ ସବୁ କେଉଁଠି ରହେ ସେ ଖବର ଆଣିଛୁ ?"

ଶେର୍ ଅଲ୍ଲୀ– "ହଁ ହଜୁର। ଯେଉଁ ଘରେ ବେଗ୍ ସାହେବ ଶୁଅନ୍ତି, ସେଇ ଘର ଖଟ ତଳେ ଏକ ଲୁହା ସିନ୍ଦୁକରେ ରହୁଛି।"

ସେଦିନ ଠିକ୍‌ହେଲା ଯେ ଦରିୟା ଖାଁ ନିଜେ ବେଗ୍ ସାହେବଙ୍କ ସଙ୍ଗେ କଥାବାର୍ତ୍ତା କରି ଫେରିଲା ପରେ ଯାଇ ଅନ୍ୟ ସବୁ ଯୋଜନା ହେବ।

ଶେର୍ ଅଲ୍ଲୀକୁ ନେଇ ଦରିୟା ଖାଁ ବେଗ୍ ସାହେବ ଘରକୁ ଗଲା। ମହମ୍ମଦ ବେଗ୍ ଦରିୟା ଖାଁକୁ ଦେଖି କହିଲେ– "ମୋର ବଡ଼ ସୌଭାଗ୍ୟ ଯେ ଆପଣଙ୍କ ପରି ବଡ଼ଲୋକଙ୍କର ମୋ ଘରେ ପାଦ ପଡ଼ିଲା।"

ଦରିୟା ଖାଁ କହିଲା– "ଆପଣଙ୍କ ସହିତ ବ୍ୟବସାୟ କରିବାକୁ ମୁଁ ଆସିଛି। କିନ୍ତୁ ଆଉ ଦିନେ ଏଥିପାଇଁ ଆସିବି। ସେଦିନ ମୋର ଆଉ କେତେଜଣ ବ୍ୟବସାୟୀ ବନ୍ଧୁ ମଧ୍ୟ ଆସିବେ।"

ମହମ୍ମଦ ବେଗ୍ କହିଲେ– ''ଖୁବ୍ ଭଲକଥା । ଆପଣମାନେ ଆସନ୍ତୁ। ଆପଣମାନଙ୍କ ପାଇଁ ତ ମୁଁ ଏଠାକୁ ଆସିଛି। ତେବେ କେବେ ଆସିବେ କହିଯାଇଥାଆନ୍ତୁ।''



ଆସିବା ଦିନ ଠିକ୍‌କରି ଦରିୟାଖାଁ ବିଦାୟନେଲା ।

ଦରିୟା ଖାଁ ଘରେ ପୁଣି ଗୁପ୍ତ ପରାମର୍ଶ ଚାଲିଲା । ଶେର୍ ଅଲ୍ଲୀ କହିଲା– ''ମୁଁ ତିନିଜଣ ଲୋକଙ୍କ ସହ ତଳ ମହଲାରେ ଗୁମାସ୍ତା ତିନିଜଣଙ୍କୁ ବାନ୍ଧି ପକାଇଲା ପରେ ବିଲୁଆ ପରି ଭୁକିବି। ମୋ ଶବ୍ଦ ଶୁଣିବା ପରେ ଆପଣମାନେ ତିନିଜଣ ବେଗ୍ ସାହେବଙ୍କୁ କାବୁକରିବେ– ନବେଦ୍ ଖୁନ୍ କରିବେ। ତା'ପରେ ଲୁହା ସିନ୍ଦୁକ

ଧରି ପଳାଇଆସିବେ।''

ଶେର୍ ଅଲ୍ଲୀର କଥା ସମସ୍ତଙ୍କ ମନକୁ ପାଇଲା। ସେ ଅନୁସାରେ କାମ ହେବା ପାଇଁ ଠିକ୍ ହୋଇ ଗୁପ୍ତ ବୈଠକ ଭାଙ୍ଗିଲା।



ନିର୍ଦ୍ଦିଷ୍ଟ ଦିନ ଦରିୟା ଖାଁ ତା' ଦଳର ଚାରିଜଣ ଡକାୟତଙ୍କୁ ଧରି ମହମ୍ମଦ ବେଗ୍‌ର ଘରେ ଯାଇ ପହଞ୍ଚିଲା। ସନ୍ଧ୍ୟା ସମୟ। ଗୁମାସ୍ତାମାନେ ତାଙ୍କ କାମରେ ଲାଗି ଥିଲେ। ମହମ୍ମଦ ବେଗ୍ ଦରିୟା ଖାଁ ଓ ତା'ର ସାଥିମାନଙ୍କୁ ଉପର ମହଲାକୁ ପାଛୋଟିନେଲେ। ସେଠାରେ ମହମ୍ମଦ ବେଗ୍ ଦରିୟା ଖାଁ ଓ ତା'ର ସାଥିମାନଙ୍କୁ

ଖାଦ୍ୟ ପରିବେଷଣ କଲେ ।

ଏଣେ ଦରିୟା ଖାଁର ମନ ବ୍ୟସ୍ତ । ସେ ତଳ ମହଲାରୁ କେତେବେଳେ ଶେର୍ ଅଲ୍ଲୀର ସଂକେତ ପାଇବ ସେଥିପାଇଁ ମନେ ମନେ ଛଟପଟ ହେଉଥାଏ ।

ଖିଆପିଆ ସରିଲା । ଏହି ସମୟରେ ଘରର ଦରଜା ନିକଟରେ କ'ଣ ଗୋଟାଏ ଫୁଟି ଭୀଷଣ ଶବ୍ଦ ହେଲା । ଧୂଆଁରେ ଘର ଭିତର ଭରିଗଲା । ଏଇ ସୁଯୋଗରେ ମହମ୍ମଦ ବେଗ୍ ଘର ଭିତରୁ ବାହାରିଆସି ଘରର କବାଟ ବାହାରପଟୁ ବନ୍ଦକରିଦେଲେ ।

ଦରିୟା ଖାଁ ପାଟିକରି କହିଲା – "ବେଗ୍ ସାହେବ, ଆମକୁ ବଞ୍ଚାନ୍ତୁ । ଆମର ନିଶ୍ୱାସ ରୁନ୍ଧି ହୋଇଯାଉଛି । କିଏ କବାଟ ବନ୍ଦ କଲା ? ଆପଣ କେଉଁଠି ଅଛନ୍ତି ?"

କିନ୍ତୁ ବେଗ୍ ସାହେବ ତ ଆଗରୁ କୋଠରି ଭିତରୁ ବାହାରି ଯାଇଛନ୍ତି । ଧୂଆଁ କମିଯିବାପରେ ସେମାନେ ବାହାରିଯିବାକୁ ଚେଷ୍ଟା କଲେ । କିନ୍ତୁ ଦୁଆର ପାଖରେ ସିପାହୀମାନେ ଠିଆହୋଇଥିଲେ । ସେମାନେ ସଙ୍ଗେ ସଙ୍ଗେ ଦରିୟା ଖାଁ ଓ ତା'ର ସାଥିମାନଙ୍କୁ ବନ୍ଦୀକରିନେଲେ ।

ଡକାୟତିର ଷଡ଼ଯନ୍ତ୍ର ଧରାପଡ଼ିଗଲା । ଏଇ ଦଳର ଅନ୍ୟ ଡକାୟତମାନଙ୍କୁ ବନ୍ଦୀକରାଗଲା । ଏହା ପରଠୁଁ ସହରରେ ଚୋରି ଡକାୟତି ବନ୍ଦହୋଇଗଲା ।

ଏହାର କିଛିଦିନ ପରେ ବୀରବଲ ଆକବରଙ୍କ ସହିତ ଦେଖାକଲେ । ଆକବର କହିଲେ – "ଧନ୍ୟ ବୀରବଲ ତୁମର ସାହସକୁ । ତୁମ ବୁଦ୍ଧି ଯୋଗୁ ସବୁ ଷଡ଼ଯନ୍ତ୍ର ଧରାପଡ଼ିଲା । ଚୋରୀ ଡକାୟତି ବନ୍ଦ ହେଲା ।" ଆକବର କହିଲେ, "ତୁମେ ଯେପରି ଆଫ୍‌ଗାନ ସୌଦାଗରର ବେଶ ଧରିଥିଲ ନା ପ୍ରକୃତରେ ତୁମକୁ କେହି ଚିହ୍ନିପାରିଲେନାହିଁ ।"

ଏହାପରେ ବୀରବଲଙ୍କର ଖ୍ୟାତି ଆହୁରି ବଢ଼ିଗଲା । ଆକବର ତାଙ୍କୁ ଅଧିକ ଭଲପାଇଲେ ।

□ □ □